# ସରଳ

# ମଧୁ ବର୍ଣ୍ଣବୋଧ



ଲୋକନାଥ ନନ୍ଦ

କାଶୀନାଥ ନାୟକ

# ସରଳ ମଧୁ ବର୍ଣ୍ଣବୋଧ

## (ଓଡ଼ିଆ ବର୍ଣ୍ଣମାଳା)

ଯୁଗ୍ମ ଲେଖକ

**ଶ୍ରୀ ଲୋକନାଥ ନନ୍ଦ**

(ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ)

**ଶ୍ରୀ କାଶୀନାଥ ନାୟକ**

(ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ)



# ସରଳ ମଧୁ ବର୍ଣ୍ଣବୋଧ
(ଓଡ଼ିଆ ବର୍ଣ୍ଣମାଳା)

*ଯୁଗ୍ମ ଲେଖକ :*
ଶ୍ରୀ ଲୋକନାଥ ନନ୍ଦ
ଶ୍ରୀ କାଶୀନାଥ ନାୟକ

*ପ୍ରକାଶକ:*
ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ
ବିନୋଦବିହାରୀ, କଟକ-୨

ପ୍ରଥମ ସଂସ୍କରଣ-୧୯୯୮

*ପ୍ରଚ୍ଛଦପଟ :*
ବି.କେ. ପ୍ରଧାନ

*ଡି.ଟି.ପି.:*
ଟେକ୍ନୋପ୍ରିଣ୍ଟ୍
ବାଖରାବାଦ, କଟକ-୨

*ମୁଦ୍ରଣ:*
ଗ୍ରାଫିକ୍ ଆର୍ଟ ଅଫସେଟ୍ ପ୍ରେସ୍
କଟକ

ମୂଲ୍ୟ : ଦଶଟଙ୍କା

# ସୂଚୀପତ୍ର










# ବର୍ଣ୍ଣମାଳା

## ସ୍ୱରବର୍ଣ୍ଣ

| | | | | | |
|---|---|---|---|---|---|
| ଅ | ଆ | ଇ | ଈ | ଉ | ଊ |
| ଋ | ୠ | ଏ | ଐ | ଓ | ଔ |

## ବ୍ୟଞ୍ଜନବର୍ଣ୍ଣ

| | | | | |
|---|---|---|---|---|
| କ | ଖ | ଗ | ଘ | ଙ |
| ଚ | ଛ | ଜ | ଝ | ଞ |
| ଟ | ଠ | ଡ | ଢ | ଣ |
| ତ | ଥ | ଦ | ଧ | ନ |
| ପ | ଫ | ବ | ଭ | ମ |
| ଯ | ର | ଳ | ୱ | ଶ |

| | | | | | |
|---|---|---|---|---|---|
| ଷ | ସ | ହ | ଂ | ଃ | ଁ |

| | | | | |
|---|---|---|---|---|
| କ୍ଷ | ଡ଼ | ଢ଼ | ୟ | ଲ |

ପ୍ରଥମ ଭାଗ



# 'ଅ' ବନା

ଆଇ ଅଖ ଖଇ ଚକ କଳ କଢ଼
ଉଇ ରଖ ନଇ ଛକ ଫଳ ଝଡ଼

ଖଟ ପର ଦଶ ଐର ନଳ ଖର ବଡ଼
ନଟ ବର ଯଶ ଧର ବଳ ସର ଝଡ଼
କଳ ଜର ଯମ ପଛ ଝର ଓଧ ଭୟ
ହଳ ତର ସମ ଗଛ ଘର ଗଧ ଲୟ
ଟଗର ଖବର ଖଦଡ଼ ସହର ମହରଗ ଝଲମଲ



କଲମ ଆଳୟ ଧବଳ କଷଣ
ପଲମ ବଳୟ ଅମଳ ବସନ
ଶରଣ ନରମ ସମୟ ଓଜନ
ବରଣ ଧରମ ସରସ ଭଜନ
କଠଉ କରମ ବୟସ ଶୟନ
କରଣ ଅକଲ ସଲଖ ପଶମ
କଳସ ପଇଡ଼ ସଡ଼କ ଗରବ
ଡଗର ଚଡ଼କ ସପନ ପରବ



ପଇଡ଼ଜଳ, ବଣର ଫଳ, ଶରଣ ରଖ, ବଳଦ ଆଣ

(କ) ହଳ କର, ଘର ଛପର କର ।

(ଖ) ଓଟ ଚଢ଼ । ଖଟ ଗଢ଼ । ଖବର ପଢ଼ । ପଥର ଘର କର ।
ବରଗଛର ଓହଳ ଧର । ଭଲ କରମ କର ।



# 'ଆ'କାର ଯୋଗ

କ+ଆ=କା

ଖ+ଆ=ଖା

ଗା ଘା ଚା ଛା ଜା ଝା ଟା ଠା ଡା ଢା ଣା ତା ଥା ଦା

ଧା ନା ପା ଫା ବା ଭା ମା ଯା ରା ଳା ଶା ଷା ସା ହା

ଧାନ ଖଟା ତାରା ମାସ ଡାଳ ପଶା

ଗାନ ପଟା ଖରା ବାସ ମାଳ କଷା

ସାନ ମଠା ପାରା ଫାଶ ଫାଳ ଉଷା

ମାନ ଛଟା ଗରା କାଶ ନାଳ ଭାଷା

ଘାସ ସାପ ସରା ନାସ କାଳ ଆଶା



ସକାଳ କାକର ସମାନ କଲରା

ଟାକରା ପଖାଳ ଶାସନ ଡାକରା

ଯାତରା ତତଲା ବାସନ ପଇତା

ମାଧବ ସାଧବ ଆକାଶ ଅଳତା



ଉପବାସ, କରଚାଷ, ଅବକାଶ,
ସାତମାସ, ଡାକତର, ତରବର

(କ) ରମା ଅପାଟାର କାଶ, ସାନଭାଇ ଆସ ଆସ ।
ବଡ଼ ଖର କାଶ ତାର, ଡାକ ଡାକ ଡାକତର ।

(ଖ) ମାଧବ ଭାଇ କରଇ ହଳ । ଛାଡ଼ଇ ଘର ବଡ଼ ସଅଳ ।
ମନ ଲଗାଇ କରଇ ଚାଷ । ଫସଲ ତା'ର ବଡ଼ ସରସ ।



# ହ୍ରସ୍ୱ 'ଇ' କାର ଯୋଗ

କ+ଇ=କି ଖ+ଇ=ଖି

ଗି ଘି ଚି ଛି ଜି ଝି ଟି ଠି ଡି ଢି ଣି ତି ଥି ଦି

ଧି ନି ପି ଫି ବି ଭି ମି ଯି ରି ଳି ଶି ଷି ସି ହି



ଚିଲ ଚିହ୍ନି ମଣି ବାଲି କାଳିଆ

ଖିଲ ଗିନି ଖଣି ଚାଲି ବାଳିଆ

ଝିଅ ବିଲ ଘଡ଼ି ଡାଲି ହବିଷ

ଘିଅ ବଡ଼ି ଖଡ଼ି ସିଝା ଦିବସ

ବିରାଡ଼ି ଶକତି ଦିବସ ବାଳିକା

ହରିଣ ଶିଶିର ଶକତି କଳିକା

ଅତିଶୟ, ଇତିହାସ, ଦୟାନିଧି, ଅଭିଳାଷ, ପରିହାସ



(କ) କାଆ କାଆ କରି ରାବିଲା କାଉ,
ଉଠ ଉଠ ମଠ ନକର ଆଉ ।

(ଖ) ପିଇବା ପାଣି ପିଇବ ଛାଣି
ପଇସାଟି ସଦା ରଖିବ ଗଣି ।

(ଗ) ଭଲ କରି ମାଜ ତାଟିଆ ଗିନା,
ଅମଜା ବାସନ ଆଣି ଖାଅନା ।

(ଘ) ଆସ ରବି ଛବି ବଜାର ଯିବା,
ଭଲ ଛବି ବହି କିଣି ଆଣିବା ।
ଗପବହି ପଢ଼ା ମଉଜ ଭାରି,
ଆଣିବା ଏଥର ଖରିଦ କରି ।



# ଦୀର୍ଘ 'ଈ'କାର ଯୋଗ

କ+ଈ=କୀ

ଖ+ଈ=ଖୀ

ଗୀ ଘୀ ଚୀ ଛି ଜୀ ଝୀ ଟୀ ଠୀ ଡୀ ଢୀ ଣୀ ତୀ ଥୀ ଦୀ

ଧୀ ନୀ ପୀ ଫୀ ବୀ ଭୀ ମୀ ଯୀ ରୀ ଲୀ ଶୀ ଷୀ ସୀ ହୀ



ହାତୀ ବୀର ଧୀର ନାରୀ ଦାସୀ କୀଟ

ସତୀ ତୀର ଶଶୀ ବୀଣା ମୀନ ଶୀତ

ବୀଜ ମାନୀ ସୀମା ହୀନ ଶାରୀ ନୀର

ଗୀତ ଦୀନ ସୀତା ପକ୍ଷୀ ଫଣୀ ବୀର

ନଦୀ ଲୀନ ଲୀଳା ପୀଡ଼ା ଭୀତ କ୍ଷୀର



ଶୀତଳ ନାଉରୀ ଜୀବନ ମାନବୀୟ

ଜୀବିତ କଦଳୀ ଧରଣୀ ମାନନୀୟ

ଅମୀର ଜନନୀ ତରଣୀ ବିପରୀତ

ଗଭୀର ଭଗିନୀ ପୀଡ଼ିତ ମହାଦୀପ

ଶରୀର କାହାଳୀ ଭବାନୀ ସମୀରଣ

(କ) ରଜନୀ ନାନୀ ଗାଉଛି ଗୀତ
ଜାନକୀ ଅପା ତାହାରି ମିତ ।

(ଖ) କାହାଳୀ ବାଜିଲା, ପାଇକ ସାଜିଲା
ରଜନୀ ପାହିଲା, ଧରଣୀ ହସିଲା ।

(ଗ) କଦଳୀ ପାଚିଲା, ବଢ଼ିଆ ବାସିଲା
ବୀଣା ନାନୀ ଆସି ପଚାରି ବସିଲା ।
ସତକଥା ସିଏ ଜାଣିବ ଯଦି
ଏକା ଖାଇଦେବ କିଛି ନଭାବି ।





# ହ୍ରସ୍ୱ 'ଉ'କାର ଯୋଗ

କ+ଉ=କୁ　　　ଖ+ଉ=ଖୁ

ଗୁ ଘୁ ଚୁ ଛୁ ଜୁ ଝୁ ଟୁ ଠୁ ଡୁ ଢୁ ଣୁ ତୁ ଥୁ ଦୁ ଧୁ

ନୁ ପୁ ଫୁ ବୁ ଭୁ ମୁ ଯୁ ରୁ ଲୁ ଶୁ ଷୁ ସୁ ହୁ ୟୁ ଳୁ



| | | | | |
|---|---|---|---|---|
| ନଟୁ | ସାରୁ | ଫୁଲ | ଚୁଆ | ଶୁଆ |
| ବଟୁ | ଆଳୁ | ଗୁଆ | ସୁନା | କୁଆ |
| ସୁଖ | ଶୁଭ | ଚୁଡ଼ା | ବୁଢ଼ା | ଛୁଆ |
| କୁଶ | ମୁଖ | ବୁଢ଼ୀ | ମୁଢ଼ି | ଭୁଆ |
| ସାଧୁ | ଭାଲୁ | ଗୁଡ଼ି | ଝାଡୁ | ଗଡୁ |

ଅସୁର ଯୁବକ ପୁରୁଷ ମଧୁମୟ
କୁକୁର ମଧୁର କୁଶଳ ଫୁଲଗଛ
ବିଲୁଆ ମୁରଲୀ ଚାତୁରୀ ଶୁଭଦିନ
ଆଳୁଅ ଆକୁଳ ମୁକୁଳ ସୁକୁମାର





(କ)　ମାଳତୀ ଫୁଲର ବାସ,
ଚହଟୁଛି ଚଉପାଶ ।

(ଖ)　ବୁଢ଼ୀ ମାଉସୀ ତୁ ପଛକୁ ଅନା
ଡାକୁଛି ପୁଅଟା ଚାଲି ଯାଆନା ।



# ଦୀର୍ଘ 'ଊ' କାର ଯୋଗ

କ+ଊ=କୂ

ଖ+ଊ=ଖୂ

ଗୂ ଘୂ ଚୂ ଛୂ ଜୂ ଝୂ ଟୂ ଠୂ ଡୂ ଢୂ ଣୂ ତୂ ଥୂ ଦୂ

ଧୂ ନୂ ପୂ ଫୂ ବୂ ଭୂ ମୂ ଯୂ ରୂ ଲୂ ଶୂ ଷୂ ସୂ ହୂ



ମୂଷା ତୂଳା ଜୂଟ ଚୂନ ମୂଳ

ସୂତା ନୂଆ ପୂଜା ଧୂଳି କୂଳ

ମୂଳା ଚୂଲ ଭୂମି ଶୂଳ ରୂପ

ଭୂପ କୂପ ଯୂଥ ଦୂତ ଧୂପ



ଗୋଧୂମ ନୂତନ ଭୂଷଣ କୂଜନ

ନୂପୁର ମୂଷିକ ପୂରଣ ପୂଜନ

ନିରୂପଣ ନୂଆହାଟ କୂପଜଳ

ଗଛମୂଳ ଦୂରବାଟ ଅନୁକୂଳ

(କ) ବରଷା ଆସିଲା, ମୟୂର ନାଚିଲା
ଗଛସବୁ ନୂଆ ପତର ଧରିଲା ।

(ଖ) ଗଡ଼ିଆ ପୂରିଲା ପୂରିଲା କୂଅ
ନାଆ ଡଡ଼ିନିଏ ନଈର ସୁଅ ।





# 'ଋ'କାର ଯୋଗ

କ+ଋ=କୃ　　　　ଖ+ଋ=ଖୃ

ଗୃ ଘୃ ଚୃ ଛୃ ଜୃ ଝୃ ଟୃ ଠୃ ଡୃ ଢୃ ତୃ ଥୃ ଦୃ

ଧୃ ନୃ ପୃ ଫୃ ବୃ ଭୃ ମୃ ଯୃ ଲୃ ଶୃ ଷୃ ସୃ ହୃ





ମୃଗ　ମୃତ　ସୃଜନ　ନୃପତି

ଘୃତ　ଘୃଣା　ବୃଷଭ　ଗୃହିଣୀ

କୃଷି　ବୃଥା　ପୃଥିବୀ　ଶୃଗାଳ

ବୃଷଭାନୁ　ମାତୃଭୂମି　କୃପାନିଧି

(କ) ଚତୁର ଶୃଗାଳ ମୃଗକୁ ଡାକି କହିଲା, ଆସ ମିତ । କୃଷକର ବିଲକୁ ଯିବା । ମନଭରି ଫସଲ ଖାଇବ । ବୃଥା ଭାବନା ଛାଡ଼ । କିଛି ନଭାବି ମୃଗ ଗଲା । ବିଲରୁ ଫସଲ ଖାଇଲା । କୃଷକ ଆସି ଭାରି ରାଗିଗଲା । ପିଟିପିଟି ମୃଗକୁ ମାରି ଦେଲା ।





# 'ଏ'କାର ଯୋଗ

କ+ଏ=କେ

ଖ+ଏ=ଖେ

ଗେ ଘେ ଚେ ଛେ ଜେ ଝେ ଟେ ଠେ ଡେ ଢେ ଣେ ତେ ଥେ ଦେ

ଧେ ନେ ପେ ଫେ ବେ ଭେ ମେ ଯେ ରେ ଳେ ଶେ ଷେ ସେ ହେ



ଛେଳି ରେଣୁ ମେଷ ଧେନୁ କେଉଟ ନେଉଳ
ମେଳି ବେଣୁ କେଶ ସେନା ବିଦେଶ ଶେଉଳ
ସେଉ ଗେଲ ବେଶ ଛେନା ଦେଉଳ ଆଦେଶ
ବେଲ ତେଲ ଦେଲ ଦେଶ ମିଠେଇ ବିଶେଷ

(କ) ଘରେ ବାହାରେ ସାଥୀ ମେଳେ
ସତ କହିବ ସବୁ ବେଳେ ।



(ଖ) ଅଖ ବୁଲୁଥିଲେ ଚକ ବୁଲୁଥାଏ
ବୁଲିପଡ଼େ ପୁଣି ପହି
ରାଇଜ ଭିତରେ ଘର କରିଥିଲେ
ପଥର ପଡ଼ିଲେ ସହି ।





# 'ଐ'କାର ଯୋଗ

କ+ଐ=କୈ

ଖ+ଐ=ଖୈ

ଗୈ ଘୈ ଚୈ ଛୈ ଜୈ ଝୈ ଟୈ ଠୈ ଡୈ ଢୈ ଣୈ ତୈ ଥୈ ଦୈ

ଧୈ ନୈ ପୈ ଫୈ ବୈ ଭୈ ମୈ ଯୈ ରୈ ଲୈ ଶୈ ଷୈ ସୈ ହୈ



ଶୈଳ ତୈଳ ଦୈବ ଐର ବୈଶାଖ

ମୈନା ପୈଠ ଶୈବ ହୈମ କୈଳାସ

ସୈନିକ ଶୈବାଳ ଶୈଶବ ସୈକତ ଗୈରିକ

(କ) ବୈଶାଖ ମାସରେ ସପୁରି ପାଚଇ
ପଣସ ବି ପାଚୁ ଥାଇ ।
ଏଇ ମାସଟିରେ ଧାନ ଅନୁକୂଳ
କରେ ଆମ ଚାଷୀଭାଇ ।



(ଖ) ହେବାରେ ସୈନିକ ହୋଇଲେ ବଡ଼
ଗଡ଼ପରେ ଆମେ ଜିଣିବା ଗଡ଼ ।
ଦେଶ ପାଇଁ ଆମେ ଲଢ଼େଇ କରି
ଜୀବନ ଦେବାକୁ ନଯିବା ଡରି ।





# 'ଓ'କାର ଯୋଗ

| କ+ଓ=କୋ | ଖ+ଓ=ଖୋ |
|---|---|

ଗୋ ଘୋ ଚୋ ଛୋ ଜୋ ଝୋ ଟୋ ଠୋ ଡୋ ଢୋ ଣୋ ତୋ ଥୋ ଦୋ

ଧୋ ନୋ ପୋ ଫୋ ବୋ ଭୋ ମୋ ଯୋ ରୋ ଲୋ ଶୋ ଷୋ ସୋ ହୋ



| | | | | |
|---|---|---|---|---|
| ଦୋଳି | ମୋତି | ଘୋଡ଼ା | ଶୋକ | ଲୋଚନ |
| ଖୋଳ | ସୋମ | ମୋଟ | ଭୋଗ | ଭୋଜନ |
| କୋଳି | ହୋମ | ଛୋଟ | ଯୋକ | ପୋଖରୀ |
| ଝୋଟ | ଲୋକ | ଲୋଟା | ପୋକ | କୋଠରି |

ସୁଲୋଚନା ସହୋଦର ମହୋଦୟ ପୁରୋହିତ ପରିଶୋଧ



(କ) ଆସହେ ତୋଳିବା ଗୋଲାପ ଫୁଲ
ଭାଇ ଭଉଣୀଏ ହୋଇଣ ମେଳ ।

(ଖ) ଗୋବର ଗୋଟେଇ ପଦି
ଗୋଦର ଗୋଡ଼ରେ ଦୋସରି ମୁଦିଲୋ
ଚାଲେ ବାଟ କୁଦି କୁଦି ।





# 'ଔ'କାର ଯୋଗ

କ+ଔ=କୌ

ଖ+ଔ=ଖୌ

ଗୌ ଘୌ ଚୌ ଛୌ ଜୌ ଝୌ ଟୌ ଠୌ ଡୌ ଢୌ ଣୌ ତୌ ଥୌ ଦୌ

ଧୌ ନୌ ପୌ ଫୌ ବୌ ଭୌ ମୌ ଯୌ ରୌ ଲୌ ଶୌ ଷୌ ସୌ ହୌ

| | | | | |
|---|---|---|---|---|
| ନୌକା | ଦୌଡ଼ | ଗୌରବ | କୌତୁକ | ସୌଦାଗର |
| ପୌଷ | ଲୌହ | କୌରବ | ନୌକର | ଚୌଦୁଆର |
| ସୌଧ | ମୌନ | ସୌରଭ | ଭୌତିକ | ମୌନାବତୀ |
| ଧୌତ | ଗୌଣ | ଯୌତୁକ | ଯୌବନ | କୌତୁକିଆ |



(କ) ନୌକା ଆଣ ଗୌରହରି ।
ବେଗେ ବେଗେ କର ପାରି ।
ସୌରଭ ପଡ଼ିଛି ବେମାର ।
ସେ ଲାଗି ଆମେ ତରତର ।



(ଖ) ଗୌରୀଦେଈ ବାହାଘର,
ବେଦୀରେ ବସିଛି ବର ।
ଯୌତୁକ ଲାଗି ଝଗଡ଼ା ଲାଗିଛି,
ଘର ଲୋକେ ହରବର ।

# ବିବିଧ ପାଠ

| | | | | |
|---|---|---|---|---|
| ମାଆ | ନିତି | ବୁଢ଼ୀ | ଦୟାଳୁ | ତୃଷା |
| ନୀରୋଗ | ନୂତନ | ଗୋପପୁର | କେତକୀ | ବେତାଳ |
| ଦୈତାରୀ | କୌଶଳ | ଗୋବର | ବୃଷଭାନୁ | ରେଡିଓ |
| ଦୂରବାଟ | ଶୁଆପର | ନୂଆଘର | ମମତାମୟୀ | ଯୌତୁକ |
| ନଦୀଧାର | ବୈରାଗୀ | ଭାଗଚାଷ | ଗୋପାଳୁଣୀ | ବୃନ୍ଦାବନ |
| ଗୌରହରି | ଟେଲିଭିଜନ | ଗୋପପୁର | କୃପାନିଧି | କଳାପଟା |



(କ) ଆମ ଦେଶ ନାମ ଅଟେ ଭାରତ,
ଏ ଦେଶେ କୃଷକ ଦେଖ ବହୁତ ।
କୃଷି କାମ କରି କୃଷକ ଭାଇ,
ଦାନା କନା ନିତି ଥାଏ ଯୋଗାଇ ।
ସୀମା ଜଗିବାକୁ ବହୁ ସୈନିକ,
ବଇରୀ ଆସିଲେ ଛେଦିବେ ବେକ ।
କିଷାନ ଯବାନ ଆମର ଭାଇ,
ଦେଲେ ଜୀବନକୁ ପାଣି ଛଡ଼ାଇ ।
ଜୟ କିଷାନକୁ ଜୟ ଯବାନ୍,
ନିତି କରୁଥିବା ଏ ଜୟଗାନ ।



(ଖ) ଓଡ଼ିଶାରେ ହେଲା ତିରିଶ ଜିଲ୍ଲା ।
ଲୁହା କାରଖାନା ରାଉରକେଲା ।
କଟକ ଜିଲ୍ଲାର ଚଉଦୁଆର ।
ସେଠାରେ ବସିଛି କପଡ଼ା କଳ ।

ମହାନଦୀ ନଦୀ ଭିତରେ ବଡ଼ ।
ତାକୁ ଅଟକାଇ ଜିଣିଛୁ ଗଡ଼ ।
ଆମ କଥା ମାନି ଚଳୁଛି ସିଏ ।
ସାରା ଦିନ ରାତି ବିଜୁଳି ଦିଏ ।
ବିଜୁଳି ବଳରେ ଜଳୁଛି ବତି ।
କଳ କାରଖାନା ଚଳୁଛି ନିତି ।



(ଗ) ପଢ଼ିଆ ପଢ଼ିଆ ପଢ଼ିଆ - ଲଗା ଛାଡ଼ି ଛାଡ଼ି ନଡ଼ିଆ
ନଡ଼ିଆ ଗଛର ଛାଇରେ - ସପୁରି ଲଗାଅ ଭାଇରେ ।

(ଘ) ଛୋଟ ପରିବାର ଯାହାର - ସୁଖେ ଦିନ ଯିବ ତାହାର ।

(ଙ) ମଶା ଯୋଗୁ ହୁଏ ମେଲେରିଆ ପୁଣି ହୋଇଥାଏ ବାତଜର
ଖାଇବା ଦରବେ ମାଛି ବସିଗଲେ ହଇଜା ହୁଏ ହାଜର ।
ଅତି ସାବଧାନ ନ ହୋଇଲେ ଭାଇ ଅକାଳେ ମରିବା ଗଡ଼ି,
ମଶାରି ଟାଣିବା, ଖାଲ ପୋତିଦେବା, ଅଳିଆକୁ ଦେବା ପୋଡ଼ି
କି କରିବେ ମଶା ମାଛି
ତାଙ୍କ କୁଳ ନାଶ କରିବା ସକାଶେ ଆମେ କାଟୁଥିବା ଗୋଛି ।





# '◌ଂ' ଅନୁସ୍ୱାର ଯୋଗ

| ଅ+ଂ=ଅଂ | କ+ଂ=କଂ | ମା+ଂ=ମାଂ | | ସ+ଂ=ସଂ |
|---|---|---|---|---|
| ହଂସ | ବିଂଶ | ଅଂଶୁପା | ଅହିଂସା | କିଂଶୁକ |
| କଂସ | ସିଂହ | ସଂଶୟ | ସଂସାର | ସଂକୋଚନ |
| ବଂଶ | ଅଂଶ | ସଂଗୀତ | ସଂବାଦ | ବଂଶୀଧର |
| ମାଂସ | ବଂଶୀ | ଦଂଶନ | ସଂଯୋଗ | ଅଂଶୁମାଳି |



(କ) ବିଲୁଆଟାଏ ପାଣି ପିଇବାକୁ ପୋଖରୀ କୂଳକୁ ଗଲା । ପାଣିରେ ହଂସଟିଏ ଖେଳୁଥାଏ । ହଂସ ମାଂସ ଭାରି ସୁଆଦ । ବିଲୁଆ ପାଟିରୁ ଲାଳ ବୋହିଲା । କିପରି ହଂସର ମାଂସ ଖାଇବ, ଏଇ କଥା ସେ ଖାଲି ଭାବିଲା । ଶେଷକୁ କହିଲା, ''ଭାଇ, ତୁମର ମୋର ଆଜିଠୁ ମିତ ହେବା । ଆସ, ଉପରକୁ ଉଠିଆସ । ମନ ଖୁସିରେ ଦି'ପଦ କଥାଭାଷା ହେବା । ତୁମେ ପୁଣି ପାଣିକି ଚାଲିଯିବ ।'' ବୋକା ହଂସଟା ପାଣିରୁ ଉଠି ଆସିଲା । ବିଲୁଆ କି ଆଉ ଛାଡ଼େ ! ହଂସଟାକୁ ଏକା କୁଦାକେ ମାଡ଼ିବସି ତା ମାଂସ ଖାଇଦେଲା ।

(ଖ) ସାବରମତୀରେ ବସି ମୋହନ   ତିଆରିଲେ ଏକ ନୂଆ କମାଣ
ଅହିଂସା ଅଟେ ସେ କମାଣ ନାମ   ଅତି ଅଦଭୁତ ତାହାରି କାମ ।
ଅହିଂସା କମାଣୁ ଛୁଟିଲା ଗୁଳି   ସାଇବ ଯେତେକ ଉଠିଲେ ଥରି
ଯେ ଯାହା ପାଇଲେ ଏକାଠି କରି   ଧରି ପଳାଇଲେ ଗୋରାବେପାରୀ ।



# 'ଃ' ବିସର୍ଗ ଯୋଗ

କ+ଃ=କଃ　ନି+ଃ=ନିଃ　ଆ+ଃ=ଆଃ　ଦୁ+ଃ=ଦଃ

| | | | |
|---|---|---|---|
| ଦୁଃଖ | ଦୁଃଖିତ | ଦୁଃସାହସ | ନିଃସଂଶୟ |
| ଦୁଃଖୀ | ନିଃଶେଷ | ଦୁଃସମୟ | ନିଃସନ୍ଦେହ |

(କ) ଦୁଃଖ ପରେ ସୁଖ ସୁଖ ପରେ ଦୁଃଖ
　　ଆସୁଥାଏ ବାରବାର
ସୁଖ ଦୁଃଖ ମିଶି ଗଢ଼ା ଏ ଜୀବନ
　　ଗଢ଼ା ଆମ ଏ ସଂସାର ।

(ଖ) ଚରଣ ଫାଟୁଆ ବଳଦ ମଠୁଆ
　　ମୁଖରା ଭାରିଯା ଯାହାର
ଯମପୁର ଯାଇ କି ଦୁଃଖ ପାଇବ
　　ନିଇତି ମରଣ ତାହାର ।





# ଁ ଚନ୍ଦ୍ରବିନ୍ଦୁ ଯୋଗ

ଉ+ ଁ =ଉଁ    କ+ ଁ =କଁ    ଗା+ ଁ =ଗାଁ    ମୁ+ ଁ =ମୁଁ

| | | | | |
|---|---|---|---|---|
| ମୁହଁ | ଦୁହଁ | ଭୂଇଁ | ଗାଆଁ | ଚଅଁର |
| କଇଁ | ଛୁଇଁ | ନାଆଁ | ସାଇଁ | ଭଁଅର |
| କାହିଁ | ପାଇଁ | ନାହିଁ | ମୁହିଁ | ଯାଆଁଳା |
| କିଆଁ | ଚୁଇଁ | ନିଆଁ | ମାଇଁ | କଅଁଳା |

(କ) ଇଟିକିଲି ମିଟିକିଲି ଫୁଟିଗଲା କାଇଁଚ
ତୁମର ଆମର ନାଲି ପଇଁଚ
ନାଲି ପେଁଏ ପେଁଏ ବାଜଇ ହୀରା
ଗୋଟିକ ଉପରେ ଗୋଟିଏ ଚିରା ।



(ଖ) ଚକାଚକା ଭଉଁରି
ମାମୁଘର ଚଉଁରୀ ।
ମାମୁ ଘରକୁ ଯାଇଥିଲି
କଇଁଆ ତୋଳି ଖାଉଥିଲି ।
ମାମୁ ଯେବେ ଦେଖିଲେ
ଦି ଚାପୁଡ଼ା ମାରିଲେ ।
ମାଇଁ କଲେ କେତେ ଆଦର
ମାମୁ ମାଡ଼ ହେଲା ପାସୋର ।



# '୍' ହଳନ୍ତ ଯୋଗ

| କ୍ | ଖ୍ | ଗ୍ | ଘ୍ | ଚ୍ | ଛ୍ | ଜ୍ | ଝ୍ |
|---|---|---|---|---|---|---|---|

| | | | | |
|---|---|---|---|---|
| ନୋଟ୍ | ସତ୍ | ଶରତ୍ | ପକେଟ୍ | ବକ୍‌ବକ୍ |
| କୋଟ୍ | ଚିତ୍ | ମହତ୍ | ସକେଟ୍ | ଫକ୍‌ଫକ୍ |
| ବୋଟ୍ | ଡଟ୍ | ଜଗତ୍ | ବଜେଟ୍ | ଫଟ୍‌ଫଟ୍ |
| ଫ୍ରକ୍ | ଜିପ୍ | ହଠାତ୍ | ନଚେତ୍ | ସର୍‌ସର୍ |

(କ) ଚକ୍ ଚକ୍ କରି ମାରେ ବିଜୁଳି
ଫର୍ ଫର୍ ଫର୍ ଉଡ଼େ ବଗୁଲୀ ।

(ଖ) ସତ୍ କାମ କଲେ ପାଇବ ସୁଖ
ଅସତ୍ କାମରେ ଦୁଃଖ ଅନେକ ।



## ବିବିଧ ପାଠ

(କ)ଫଗୁଣରେ ଦୋଳ ଅଶିଣେ ଦଶରା
ଆଷାଢ଼ରେ ରଜ ଦୋଳି
ବାରମାସେ ତେର ପରବ ଆମର
ପାରିବ କି କିଏ ଭୁଲି ।

(ଖ)ମଧୁ ଗୋପବାବୁ ଭଳି ଚରିତ, ବିଜୁ ମହତାବ ଆମ ମହତ ।
ସତ୍‌କାମେ ସଭିଏଁ ଦେଶର ନାମ, ରଖିବାକୁ କଲେ ଜୀବନ ପଣ ।
ସେପରି ମଣିଷପାରିଲେ ହୋଇ, ଫୁଲାଇବି ଛାତି ସରଗେ ଥାଇ
କହିଲେ ପୁଅକୁ ମାଆ
ମଣିଷ ପରିକା ମଣିଷ ହୋଇ ତୁ ରଖିବୁ ଏ ଜାତି ନାଆଁ ।

(ଗ) ସିଗାରେଟ ଖାଉଥାଅ ଟାଣୁଥାଅ ବିଡ଼ି
ଅଳପ ଦିନରେ ଯମ ନେବ ଭିଡ଼ିଭିଡ଼ି ।



# 'ୟ' ଫଳା (ୟ=୍ୟ)

କ+ୟ=କ୍ୟ ଖ+ୟ=ଖ୍ୟ

ଗ୍ୟ ଘ୍ୟ ଚ୍ୟ ଛ୍ୟ ଜ୍ୟ ଝ୍ୟ ଟ୍ୟ ଠ୍ୟ ଡ୍ୟ ଢ୍ୟ ତ୍ୟ ଥ୍ୟ ଦ୍ୟ ଧ୍ୟ ନ୍ୟ

ବୈଦ୍ୟ ସତ୍ୟ ବାତ୍ୟା ସଭ୍ୟ ନିତ୍ୟାନନ୍ଦ

ବାକ୍ୟ ମିଥ୍ୟା ଗଦ୍ୟ ଶଯ୍ୟା ମାନ୍ୟବର

ପୂଜ୍ୟ ବିଦ୍ୟା ପଦ୍ୟ ଭୃତ୍ୟ ବ୍ୟବହାର

ଶସ୍ୟ ନ୍ୟାୟ ଖ୍ୟାତି ଧ୍ୟାନ ବ୍ୟବସାୟ

ବିଦ୍ୟା ପଠନେ ଦିଅ ମନ ସବୁରି ହେବ ଗଣ୍ଡିଧନ ।<br>
ଆଳସ୍ୟ କରି ପରିହାର ଉଦ୍ୟମ କର ନିରନ୍ତର ।



# 'ର' ଫଳା (ର=୍ର)

କ+ର=କ୍ର ଖ+ର=ଖ୍ର

ଗ୍ର ଘ୍ର ଚ୍ର ଛ୍ର ଜ୍ର ଝ୍ର ଟ୍ର ଠ୍ର ଡ୍ର ଢ୍ର ତ୍ର ଥ୍ର ଦ୍ର

ଧ୍ର ନ୍ର ପ୍ର ଫ୍ର ବ୍ର ଭ୍ର ମ୍ର ଯ୍ର ଶ୍ର ଷ୍ର ସ୍ର ହ୍ର

ଗୃଧ୍ର ପ୍ରଜା ଶ୍ରେୟ ଶ୍ରୀକ୍ଷେତ୍ର ପ୍ରଚାର ପ୍ରତିମା

ବଜ୍ର ପ୍ରିୟ ହ୍ରଦ ସମୁଦ୍ର ସହସ୍ର ଦରିଦ୍ର

ଚିତ୍ର ଶୁଭ୍ର ନମ୍ର ଶ୍ରାବଣ ପ୍ରଳୟ ପ୍ରତାପ

ପରିଶ୍ରମ ପ୍ରଜାପତି ଶୁକ୍ରତାରା ପ୍ରତାରଣା ତ୍ରିଲୋଚନ

(କ) କ୍ରୋଧ ମନୁଷ୍ୟର ପ୍ରଧାନ ଅରି<br>
କ୍ଷଣକେ ବିବେକ ନିଅଇ ହରି ।

(ଖ) ପରିଶ୍ରମ କର ପ୍ରତି ଦିବସ,<br>
ଅଳସୁଆ ହୋଇ ଦିନେ ନବସ ।





## 'ଳ' ଫଳା (ଳ=୍ଳ) 'ଲ' ଫଳା (ଲ=୍ଲ)

କ=ଳ=କ୍ଳ　ଖ+ଳ=ଖ୍ଳ　ହ+ଲ=ହ୍ଲ　ଲ+ଲ=ଲ୍ଲ

ଗ୍ଲାନି　ମ୍ଲେଚ୍ଛ　କ୍ଲାସ　ପଲ୍ଲୀ　କ୍ଲେଶ　ଉଲ୍ଲାସ
ମ୍ଲାନ　ଶ୍ଲୋକ　ଗ୍ଲାସ　ଦିଲ୍ଲୀ　ଆଲ୍ଲା　ଭଲ୍ଲୁକ
ଅମ୍ଲ　ଶୁକ୍ଲ　ମଲ୍ଲୀ　ଶ୍ଲେଷ　କ୍ଲୀବ　ପଲ୍ଲବ
ପଲ୍ଲବୀ　ଆହ୍ଲାଦ　ବଲ୍ଲଭ　ଅକ୍ଲେଶ　ଉଲ୍ଲାସ　ପ୍ରହ୍ଲାଦ

(କ) ଭଲ୍ଲୁକ ବଡ଼ ହିଂସ୍ର ଜୀବ,
ତା ପାଖ ନଯାଅ କେଶବ ।



(ଖ) କ୍ଲେଶ ଦିଅ ନାହିଁ କାହାକୁ କେବେ,
ଲୋକରେ ପ୍ରଶଂସା ପାଇବ ଯେବେ ।

(ଗ) ମଲ୍ଲୀଫୁଲ ଫୁଲ ମଧ୍ୟରେ ସାର ।
ନଗର ମଧ୍ୟରେ ଦିଲ୍ଲୀ ସହର ।



## 'ବ' ଫଳା (ବ=୍ୱ)

କ+ବ=କ୍ୱ　ଖ+ବ=ଖ୍ୱ

ଗ୍ୱ ଘ୍ୱ ଚ୍ୱ ଛ୍ୱ ଜ୍ୱ ଝ୍ୱ ଟ୍ୱ ଠ୍ୱ ଡ୍ୱ ଢ୍ୱ ଣ୍ୱ
ତ୍ୱ ଥ୍ୱ ଦ୍ୱ ଧ୍ୱ ନ୍ୱ ପ୍ୱ ଫ୍ୱ ଭ୍ୱ ଶ୍ୱ ଷ୍ୱ ସ୍ୱ ହ୍ୱ

ଅଶ୍ୱ　ଧ୍ୱଜା　ଶ୍ୱାସ　ଆଶ୍ୱିନ　ତପସ୍ୟା　ସରସ୍ୱତୀ
ଶ୍ୱାନ　ଧ୍ୱନି　ସ୍ୱାଦ　ଈଶ୍ୱର　ସ୍ୱଭାବ　ତପସ୍ୱିନୀ
ସ୍ୱାମୀ　ଦ୍ୱୀପ　ଜ୍ୱର　ତେଜସ୍ୱୀ　ସ୍ୱାଧୀନ　ତେଜସ୍ୱିନୀ
ସ୍ୱର　ଦ୍ୱାର　ପକ୍ୱ　ବିଶ୍ୱାସ　ଗହ୍ୱର　ବିବଶ୍ୱାନ

(କ) କୁଆଁର ପୂନିଅଁ ଆଶ୍ୱିନ ମାସେ,
କେତେ ଖେଳ ଖେଳୁ ମନ ହରଷେ ।



(ଖ) ସ୍ୱଭାବ ଯଦ୍ୟପି ନୁହଁଇ ଭଲ,
ବିଦ୍ୱାନ ବି ପାଏ ନାହିଁ ଆଦର ।



# 'ନ' ଫଳା (ନ=୍ନ)

କ+ନ=କ୍ନ        ଖ+ନ=ଖ୍ନ

ଗ୍ନ ଘ୍ନ ଚ୍ନ ଛ୍ନ ଜ୍ନ ଝ୍ନ ତ୍ନ ଥ୍ନ ପ୍ନ ମ୍ନ ଶ୍ନ ଷ୍ନ ସ୍ନ ହ୍ନ

| | | | | |
|---|---|---|---|---|
| କାହ୍ନୁ | ଅନ୍ନ | ପତ୍ନୀ | ପ୍ରସନ୍ନ | ଜଗନ୍ନାଥ |
| ଲଗ୍ନ | ପ୍ରଶ୍ନ | ଚିହ୍ନ | ଆହ୍ନିକ | ଜହ୍ନମାମୁଁ |
| ଭଗ୍ନ | ବିଘ୍ନ | ଛିନ୍ନ | ଜାହ୍ନବୀ | ରତ୍ନାକର |
| ସ୍ୱପ୍ନ | ବହ୍ନି | ଜହ୍ନ | ଦୁଃସ୍ୱପ୍ନ | ରତ୍ନଗିରି |

(କ) ସ୍ୱପ୍ନ କଥା କେବେ ନୁହଇ ସତ ।
ବୈଶାଖ ମଧ୍ୟାହ୍ନେ ଖରା ବହୁତ ।
ଯତ୍ନ କଲେ ରତ୍ନ ମିଳେ ଏ କଥାଟି ସାର
ପରିଶ୍ରମ କରିବାକୁ ହୁଅ ଆଗୁସାର ।



(ଖ) ଆସ ଜହ୍ନମାମୁ ଶରଦ ଶଶୀ,
ମୋ କାହ୍ନୁ ହାତରେ ପଡ଼ରେ ଖସି ।

(ଗ) ଆଷାଢ଼ରେ ରଥଯାତ ।
ରଥେ ବିଜେ ହେଲେ ଶ୍ରୀଜଗନ୍ନାଥ ।
ଭାଇ ଭଗ୍ନୀଙ୍କ ସହିତ ।



# 'ମ' ଫଳା (ମ=୍ମ)

କ+ମ=କ୍ମ　　ଦ+ମ=ଦ୍ମ　　ତ+ମ=ତ୍ମ

ଖ୍ମ ଗ୍ମ ଘ୍ମ ଙ୍ମ ଟ୍ମ ଠ୍ମ ଣ୍ମ ଦ୍ମ ଧ୍ମ ନ୍ମ ମ୍ମ ଶ୍ମ ଷ୍ମ ସ୍ମ ହ୍ମ

| | | | | |
|---|---|---|---|---|
| ପଦ୍ମ | ଜନ୍ମ | ସ୍ମିତ | ଶ୍ମଶାନ | ପଦ୍ମାବତୀ |
| ସୂକ୍ଷ୍ମ | ବ୍ରହ୍ମ | ସ୍ମର | ସ୍ମାରକ | ହିରଣ୍ମୟ |
| ରଶ୍ମି | ଗ୍ରୀଷ୍ମ | ସଦ୍ମ | ସ୍ମରଣ | ଆକସ୍ମିକ |
| ଲକ୍ଷ୍ମୀ | ଭୀଷ୍ମ | ଗୁଳ୍ମ | ବ୍ରାହ୍ମଣ | ନୀଳପଦ୍ମ |

(କ) ପଦ୍ମ ଫୁଟିଛି ସରୋବରେ
ସରାଗେ ବେଢ଼ିଲେ ଭ୍ରମରେ ।



(ଖ) ତାଙ୍କୁ ରତ୍ନାକର ଋଷି ବାଲ୍ମୀକି
ସ୍ମରିଲେ ସେ କଥା ଲାଗେ ଭେଳିକି ।

(ଗ) ଲକ୍ଷ୍ମୀ ଠାକୁରାଣୀ ଅଛବ ଘରେ
ପୂଜା ପାଉଥିଲେ ହରଷ ଭରେ ।
ମାଆ ନମାନିଲେ ଛୁଆଁ ଅଛୁଆଁ
ଆମେ ସେ କଥାକୁ ମାନିବା କିଆଁ ?







# ରେଫ ଯୋଗ ( ରେଫ= ʼ )

କ+ ʼ =ର୍କ     ଖ+ ʼ =ର୍ଖ

ର୍ଗ ର୍ଘ ର୍ଚ ର୍ଛ ର୍ଜ ର୍ଝ ର୍ଟ ର୍ଠ ର୍ଡ ର୍ଢ ର୍ଣ ର୍ତ ର୍ଥ ର୍ଦ ର୍ନ ର୍ପ ର୍ବ ର୍ଭ ର୍ଷ ର୍ହ

| | | | | | |
|---|---|---|---|---|---|
| ତୀର୍ଥ | ମୂର୍ଖ | କର୍ଣ୍ଣ | ଦର୍ପଣ | କୋଣାର୍କ | ସର୍ବସ୍ୱ |
| ସର୍ପ | ପୂର୍ବ | ବର୍ଣ୍ଣ | କର୍କଶ | ଉର୍ବଶୀ | ନିର୍ମାଣ |
| ଜୀର୍ଣ୍ଣ | ପାର୍ଥ | ଦୀର୍ଘ | ଅର୍ଜନ | ବିଦ୍ୟାର୍ଥୀ | ସମର୍ଥ |
| ଗର୍ବ | ସ୍ୱାର୍ଥ | ବର୍ଷ | ଅକର୍ମା | ଶର୍କରା | ବିମର୍ଷ |
| ପର୍ବ | କର୍ମୀ | ଅର୍ଘ୍ୟ | କାର୍ପାସ | ନିର୍ଜନ | ଆଦର୍ଶ |

(କ) ଆରେ କାକପୋଇ କୁଆଡ଼େ ଯାଉ...
ପର୍ବତୁ ପର୍ବତ ତୁ ବୁଲୁଥାଉ ।
ନିର୍ଝର ଝର୍ଝର ଶବଦ କରେ...
ସେ ଶବଦେ ତୋର ଛାତି କି ଥରେ ?



(ଖ) ଗର୍ବ କରୁଥିଲା ରାଜା ରାବଣ
ଖର୍ବ କରିଦେଲେ ରାମ ଲକ୍ଷ୍ମଣ ।



# ବିବିଧ ପାଠ

(କ) ମଧୁର ବିନୟ ବଚନ । କହି ତୋଷିବ ପ୍ରାଣୀମନ ।

(ଖ) କଥା କହ ଅଳପ, କାମ କର ବହୁତ ।
ପରକୁ ସାହାଯ୍ୟ କରି ରଖ ନିଜ ମହତ ।

(ଗ) ବୈଶାଖ ମାସରେ ନଈବାଲିଟାତ ତାତି ହୋଇଥିଲା ନିଆଁ,
ତରତର ହୋଇ ଚାଲିଗଲା ଗୌର ସେକଥା ଜାଣିବ କିଆଁ ?
ଗୋଡ଼ରେ ଫୋଟକା ବାହାରି ପଡ଼ିଲା ହେଲା ଭାରି କଲବଲ,
ଦ୍ୱିପ୍ରହରେ କିଏ ବାଲିରେ ଚାଲେ କି ଏତିକି ନାହିଁ ଅକଲ ।

(ଘ) ଗଛ ଆମର ପ୍ରଧାନ ମିତ୍ର । ଗଛଠାରୁ ଆମେ ବହୁତ ସାହାଯ୍ୟ ପାଉ । ଫୁଲ, ଫଳ, ପତ୍ର ଆମର ପ୍ରତିଦିନ ଦରକାର । ଗଛ ଥିବାରୁ ଆମେ ସେ ସବୁ ଅକ୍ଲେଶରେ ପାଉଛୁ । ଗଛର ଚେର, ଛେଲି, ପତ୍ର ଔଷଧ ରୂପେ ବ୍ୟବହୃତ ହୁଏ । କାଠ ଆମେ ଜାଳୁ । ଘର ତିଆରିରେ କାଠ ଆବଶ୍ୟକ ହୁଏ । ଗଛ ସବୁ ଦିଏ, ମାତ୍ର ବଦଳରେ କିଛି ମାଗେ ନାହିଁ । ଆମେ ପଇସା ଲୋଭରେ ପ୍ରତିଦିନ ଗଛ କାଟି ପକାଉଛୁ । ଶୀଘ୍ର ଏ ଦେଶ ମରୁଭୂମି ହୋଇଯିବ । ଆମେ ଗଛ ଲଗାଇ ତାକୁ ବଢ଼ାଇବା ।

ତୃତୀୟ ଭାଗ



# ଯୁକ୍ତାକ୍ଷର

**ଙ୍କ=ଙ+କ** ଅଙ୍କ ବାଙ୍କ ଲଙ୍କା ଆଙ୍କୁଡ଼ି ସଙ୍କୋଚ
ଟାଙ୍କ ଶଙ୍କା ଫାଙ୍କ ଶାଙ୍କୁଚ ପଙ୍କଜ

ମାଙ୍କଡ଼ ଖାଇଲେ କାଙ୍କଡ଼ କଷି, ରଙ୍କ ପ୍ରଧାନଙ୍କ ଭାଡ଼ିରେ ବସି ।
ମାରିଲେ ଫୋପଡ଼ା ବାଙ୍କ ଶଙ୍କର, ଡରି ପଳାଇଲେ ମାଙ୍କଡ଼ ପଲ ।

**ଙ୍ଖ=ଙ+ଖ** ଶଙ୍ଖ ଶଙ୍ଖାରି ବିଶୃଙ୍ଖଳା
ପଙ୍ଖା ସଙ୍ଖୁଡ଼ି ଶଙ୍ଖଚିଲ



(କ) ଶଙ୍ଖଚିଲ ଭାଇ ନମସ୍କାର
ମାଟିଆ ଚିଲକୁ ଗୋଇଠା ମାର ।

(ଖ) ଶଙ୍ଖାରି ଭାଇ ବିକଇ ଶଙ୍ଖା ଚାଷୀ ବିକଇ ଧାନ ।
ବ୍ରାହ୍ମଣ ପୁଅ ନଡ଼ିଆ ବିକି ସୁଖେ ବିତାଏ ଦିନ ।

**ଙ୍ଗ= ଙ+ଗ** ଗଙ୍ଗା ଦଙ୍ଗା ସଙ୍ଗାତ ଆଙ୍ଗୁଳି
ଭଙ୍ଗା ସାଙ୍ଗ କଙ୍ଗାରୁ ଭଙ୍ଗିମା

ଅନଙ୍ଗଭୀମ ଦେବ ଗଙ୍ଗବଂଶର ରାଜା । ସେଇ ବଂଶର ଲାଙ୍ଗୁଳା ନରସିଂହ ଦେବ କୋଣାର୍କ ଦେଉଳ ତୋଳାଇଥିଲେ । ସେଠାରେ ସୂର୍ଯ୍ୟଙ୍କୁ ପୂଜା କରାଯାଉଥିଲା । ଏବେ ବଡ଼ ଦେଉଳଟି ଭାଙ୍ଗିପଡ଼ିଛି । ମୁଖଶାଳାଟି ଅଛି । ତାକୁ ଦେଖିବାକୁ ପ୍ରତିଦିନ ଅସଂଖ୍ୟ ଲୋକଙ୍କ ଭିଡ଼ ଲାଗିଛି । ଦେଉଳର ଚାରିପଟେ ନାନା ଢଙ୍ଗରେ ପଥର ପ୍ରତିମା ମାନ ତିଆରି କରାଯାଇଛି । କୋଣାର୍କ ଆମ ଜାତିର ଚେକ ।

ଙ୍ଘ= ଙ+ଘ

ସଙ୍ଘ ଲଙ୍ଘନ ସିଙ୍ଘାଣି

ଜଙ୍ଘ ସଙ୍ଘା ଲଙ୍ଘନ

(କ) ବୀର ହନୁମାନ ଲଙ୍ଘି ସାଗର
ଅଶୋକ ବନରେ ହେଲା ହାଜର ।
ଦରଶନ କରି ସୀତା ଦେବୀଙ୍କୁ
ରାମଙ୍କ ବାରତା ଦେଲା ତାହାଙ୍କୁ ।

(ଖ) ଗଦା ମାଡ଼େ ଜଙ୍ଘ ହାଡ଼ ଭାଙ୍ଗିଲା ଭୀମ
କହିଲା ରେ ଦୁର୍ଯ୍ୟୋଧନ ମୁଁ ତୋର ଯମ ।
ଘୋର ପାପୀ କରିଥିଲୁ ଅକର୍ମ ଯେତେ
ପରାଭବ ପାଇବୁ ତୁ ମୋହରି ହାତେ ।

ଞ୍ଚ= ଞ+ଚ

କୁଞ୍ଚ ଛୁଞ୍ଚ ପାଞ୍ଚ ପଞ୍ଚୁ ପୁଞ୍ଚ ମଞ୍ଚ ଛଞ୍ଚାଣ ଅଞ୍ଚଳ

ସଞ୍ଚୟ ଚଞ୍ଚଳ ବିଞ୍ଚଣା କାଞ୍ଚନନିକାଞ୍ଚନ ପଞ୍ଚାୟତ

(କ) ପାଞ୍ଚ ସାତ ଯଦି ହୋଇବେ ମେଳି
ଚଞ୍ଚଳ ଉପୁଜେ ସେଠାରେ କଳି ।



(ଖ) ଇଞ୍ଚୁଡ଼ି ଠାରେ ଲୁଣ ମରା ହେଲା । ସେ ଅଞ୍ଚଳର ବହୁ ଲୋକ ଲୁଣ ମାରିଲେ । ଇଂରେଜ ସରକାର ଏକଥା ଜାଣିଲେ । ରାଗ ତାଙ୍କର ପଞ୍ଚମକୁ ଉଠିଗଲା । ଚଞ୍ଚଳ ସୈନ୍ୟ ନେଇ ଇଞ୍ଚୁଡ଼ିକୁ ଗଲେ । ଲୁଣ ମାରୁଥିବା ଲୋକଙ୍କୁ ଗୋରୁ ଗାଈ ପରି ଠେଙ୍ଗାରେ ପିଟିଲେ । ପାଞ୍ଚ ସାତଜଣ ମାଡ଼ ଖାଇ ମଲା ପରି ହୋଇଗଲେ । ଅନେକଙ୍କୁ ଜେଲକୁ ନେଇଗଲେ ।

ଞ୍ଛ = ଞ + ଛ      ଛଞ୍ଛା   ଲାଞ୍ଛନା   ଅବାଞ୍ଛିତ

ବାଞ୍ଛା   ଚାଞ୍ଛିବା   ବାଞ୍ଛନୀୟ

(କ) କାଞ୍ଚନେ ବାଞ୍ଛା ନାହିଁ ମୋର । ମାଗଇ ପ୍ରଭୁ କୃପା ତୋର ।

(ଖ) ଦୁଃଶାସନ ଦ୍ରୌପଦୀଙ୍କୁ ବହୁ ଲାଞ୍ଛନା ଦେଲା । ତାଙ୍କ କେଶଧରି ଘୋଷାଡ଼ି ଆଣିଲା । ଦ୍ରୌପଦୀଙ୍କ ଜୁଡ଼ା ଫିଟିଗଲା । ଭୀମ କହିଲେ ଆଉ ଜୁଡ଼ା ସଜାଡ଼ ନାହିଁ । ଦୁଃଶାସନ ଛାତିର ତାତିଲା ଲହୁରେ ମୁଁ ତୁମ ଜୁଡ଼ା ସଜାଡ଼ିବି । ଏଇ ବାଞ୍ଛା ପୂରଣ ହେବା ଯାଏ ତୁମ କେଶ ଫିଟିଥାଉ । ମହାଭାରତ ଲଢ଼େଇରେ ଭୀମ ଦୁଃଶାର ଛାତି ଚିରିଦେଲେ । ସେଇ ଲହୁରେ ଦ୍ରୌପଦୀଙ୍କ ଜୁଡ଼ା ସଜାଡ଼ିଲେ । ଭୀମଙ୍କ ବାଞ୍ଛା ପୂରଣ ହେଲା ।

ଞ୍ଜ = ଞ + ଜ      ସଞ୍ଜ   ମଞ୍ଜା   ପିଞ୍ଜରା   ପୁଷ୍ପାଞ୍ଜଳି

ରଞ୍ଜା   ପାଞ୍ଜି   ଅଞ୍ଜଳି   କୃତାଞ୍ଜଳି

ଭଞ୍ଜ ସାହିତ୍ୟରେ ମଞ୍ଜୁ ନିପୁଣା,
ସଞ୍ଜୟ ନୁହଇ ତାଠାରୁ ଊଣା ।

ମୃତ୍ୟୁଞ୍ଜୟଙ୍କୁ ଦେଖାଯାଏ ନାହିଁ । ସବୁଦିନ ସଞ୍ଜବେଳେ ସେ ଖଞ୍ଜଣି ବଜାଇ ଗୀତ ବୋଲେ। ତା'ଗୀତଶୁଣିବାକୁ ଭାରି ଭଲଲାଗେ ।

ଞ୍ଝ = ଞ + ଝ      ପଞ୍ଝା   ବାଞ୍ଝ



(କ) ପଞ୍ଝାଏ ମଦୁଆ ହେଲେ ଏକାଠି,
ପାଟିଗୋଳେ ଯାଏ ଆକାଶ ଫାଟି ।

(ଖ) ଓଡ଼ି ଅ (ଓଡ଼ିଆ) | ବାଞ୍ଝ ମାଇପିଙ୍କ କିବା ଜଞ୍ଜାଳ
ନାହିଁ ଛୁଆପିଲା ନାହିଁ ଗହଳ ।

ଣ୍ଟ= ଣ+ଟ

ଘଣ୍ଟା ତଣ୍ଟି କଣ୍ଟକ କଣ୍ଟିଆ
କଣ୍ଟା ଖୁଣ୍ଟ ଖୁଣ୍ଟିଆ ଝୁଣ୍ଟିଆ

ବିଲୁଆଟାଏ ମାଂସ ଖାଉଥିଲା । ତା ତଣ୍ଟିରେ କଣ୍ଟାଟାଏ ଅଟକିଗଲା । ସେ କିଛି ଖାଇ ପାରିଲା ନାହିଁ । ବେଣ୍ଟ ପୋଖରୀ କୂଳରେ କଣ୍ଟିଆ ବଗଟିଏ ବସିଥିଲା । ବିଲୁଆ କହିଲା, ନାନୀ ତଣ୍ଟିରୁ କଣ୍ଟାଟା କାଢ଼ିଦେ । ନହେଲେ ମୁଁ ମରିଯିବି । ବଗ ମନେ ମନେ ପାଞ୍ଚିଲା—ଅନ୍ୟକୁ ବିପଦରେ ସାହାଯ୍ୟ କରିବା ଭଲ । ବିଲୁଆ କହିଲା, ଦେଖିବୁ, ମୁଁ ତୋତେ ବଢ଼ିଆ ମାଲ ଦେବି । ବଗ ଥଣ୍ଟ ପୂରାଇ ବିଲୁଆ ତଣ୍ଟିରୁ କଣ୍ଟାଟା ବାହାର କରିଦେଲା । କହିଲା, କଅଣ ଦେବୁ ପରା ଦେ ?

ବିଲୁଆ କହିଲା, ଓଲିଟାଏ କିଲୋ । କେତେବେଳୁ ମୁଁ ଦେଇସାରିଲିଣି ନା । ବଗୁଲୀ କହିଲା—କଅଣ ଦେଲୁ ବା ? ଠକଟାଏ ତୁ । ବିଲୁଆ କହିଲା, ତୁ ମୋ ତଣ୍ଟିରେ ଥଣ୍ଟ ପୂରାଇଥିଲୁ । ମୁଁ ପାଟି ଚାପି ଦେଇଥିଲେ କଅଣ ହୋଇଥାନ୍ତା ? ମୁଁ ସେପରି କଲି ନାହିଁ । ତୋ ଜୀବନ ତୋତେ ଦେଇଦେଲି । ଏ କଅଣ ବଢ଼ିଆ ଜିନିଷ ନୁହେଁ ।

ଣ୍ଠ= ଣ+ଠ

ଶୁଣ୍ଠି କଣ୍ଠି ଗଣ୍ଠି ଗଣ୍ଠିଲି ଲୁଣ୍ଠନ
ଶୁଣ୍ଠା ଆଣ୍ଠୁ କଣ୍ଠା ଲଣ୍ଠନ ବୈକୁଣ୍ଠ

କଣ୍ଠକୁ ଆଣ୍ଠୁଗଣ୍ଠି ବାତ ଧରିଛି । ସେ ଚାଲିବୁଲି ପାରୁ ନାହିଁ । ବୈକୁଣ୍ଠ ବୈଦ୍ୟ ଆସିଥିଲେ । ଶୁଣ୍ଠି ଚୂନା ସାଙ୍ଗରେ ଓଷଦ ଖାଇବାକୁ ଦେଇଗଲେ ।

ଣ୍ଡ= ଣ+ଡ କୁଣ୍ଡ ମୁଣ୍ଡା ଡେଣ୍ଡା ଭେଣ୍ଡା ଲଣ୍ଡା ହୁଣ୍ଡା ଗୁଣ୍ଡୁଚି
ମଣ୍ଡ ଚଣ୍ଡୀ ଗୁଣ୍ଡା ପେଣ୍ଡା ଥଣ୍ଡା କାଣ୍ଡ ଚଣ୍ଡାଳ

(କ) ହାତେ ଚାଖଣ୍ଡେ ଖୋଳିବ ଗାତ
ପତର ଖଣ୍ଡକେ ନଦେବ ହାତ
ଚାଖଣ୍ଡେ ଛାଡ଼ି ଭାଙ୍ଗିବ ଭଣ୍ଡା
ତେବେ ଯାଇ ଦେଖ କଦଳୀ ପେଣ୍ଡା ।

(ଖ) ଝୁଡ଼ିରେ ସଜାଡ଼ି ଅଣ୍ଡା ବାରଣ୍ଡା,
ହାତେ ଯାଉଥିଲା ସପନା ହୁଣ୍ଡା ।
ଅଣ୍ଡା ବିକିଦେଇ ଖାଇଲେ ମଣ୍ଡା,
ସପନାର ମନ ହୋଇବ ଥଣ୍ଡା ।
ଭାବି ଯାଉ ଯାଉ ପଡ଼ିଲା ଝୁଣ୍ଟି ,
ଅଣ୍ଡା ପଡ଼ି ତଳେ ଗଲାଣି ଫାଟି ।
ସପନା ହୁଣ୍ଡାରେ ସପନା ହୁଣ୍ଡା,
ମନ ବୋଧ କରି ଖାଉଥା ମଣ୍ଡା ।

ଣ୍ଢ= ଣ+ଢ ଷଣ୍ଢ ଶୁଣ୍ଢି ମେଣ୍ଢା ସଣ୍ଢୁଆଶି ।

(କ) ସଣ୍ଢୁଆଶି ଧରି ଲଣ୍ଢା କମାର,
ତତଲା ଲୁହାରେ ଦିଏ ପାହାର ।
ଗଢ଼େ ଦାଆ ଗଢ଼େ କଟୁରି ଛୁରୀ,
ପନିକି ଚିମୁଟା ଖୁର କତୁରି ।

(ଖ) ମେଣ୍ଢା ମୁଣ୍ଡିଆଟି ବଡ଼ ଟାଣ । ଷଣ୍ଢ ଶିଙ୍ଗ ପାଇଁ ସାବଧାନ ।

(ଗ) ମହାଦେବଙ୍କର ବାହନ ଷଣ୍ଢ, ପାର୍ବତୀଙ୍କର ସିଂହ ।
ଷଣ୍ଢଟାକୁ ସିଂହ ଖାଏ ନାହିଁ କିଆଁ ଜାଣିଥିଲେ କହିଦିଅ ।

**ନ୍ତ= ନ+ତ**

ଶାନ୍ତି ପନ୍ତା ପ୍ରାନ୍ତ ଚିନ୍ତା ଅଶାନ୍ତି ମନ୍ତର

ଭ୍ରାନ୍ତ ଯନ୍ତା କାନ୍ତ ହନ୍ତା ସନ୍ତୋଷ କୁନ୍ତଳା

(କ) ଅନନ୍ତା ତନ୍ତୀ ବୁଣଇ ଲୁଗା ତନ୍ତ ପାଖରେ ବସି
ସନ୍ତୋଷେ ଦିନ କଟଇ ତାର ହୁଏ ବହୁତ ଖୁସି ।

(ଖ) ସନ୍ତୋଷ ମନେ କାର୍ଯ୍ୟ କର । ଶାନ୍ତି ପାଇବ ନିରନ୍ତର ।

(ଗ) ଆମ ରାଜ୍ୟର କୁନ୍ତଳା କୁମାରୀ ବହୁତ ବହି ଲେଖିଥିଲେ ।
ତାଙ୍କ ଲେଖା ଘରେ ଘରେ ଲୋକ ପଢ଼ନ୍ତି ।

**ନ୍ଥ= ନ+ଥ**

ସନ୍ଥ ପେନ୍ଥା ମନ୍ଥରା ମନ୍ଥନ

କାନ୍ଥ ଗୁନ୍ଥା ସୁନ୍ଥା ରୋମନ୍ଥ

କୈକେୟୀ ରାଣୀଙ୍କ ଦାସୀ ମନ୍ଥରା
ସୁନ୍ଥା ପାରିଥାଏ ଗୁନ୍ଥି ଗଜରା ।
କୁନ୍ଥାଇ କୁନ୍ଥାଇ କହେ ସେ କଥା
ଲୋକ ଜାଣିବାକୁ ପାଉଛି ବ୍ୟଥା ।



**ନ୍ଦ= ନ+ଦ**

ମନ୍ଦ ଛନ୍ଦ ଚନ୍ଦ୍ର ଜନ୍ଦା ବାନ୍ଦର ଅନ୍ଦର ଅରବିନ୍ଦ

କୁନ୍ଦ ବନ୍ଦ ଫନ୍ଦ ଖନ୍ଦ ସୁନ୍ଦର ମନ୍ଦାର ଆଦିକନ୍ଦ

(କ) ମନ୍ଦ ମନ୍ଦ ପବନ ବହୁଛି । ଆନନ୍ଦ ମନ୍ଦିରକୁ ଆସ ।
ପୂଜାରୀ ଆଦିକନ୍ଦ ଆମ ମୁଣ୍ଡରେ ଚନ୍ଦନ ଲଗାଇ ଦେବେ ।

(ଖ) ମଙ୍ଗଳାଙ୍କ ମୁଣ୍ଡେ ଶୋହେ ସିନ୍ଦୂର
କଣ୍ଠରେ ସୁନ୍ଦର ମନ୍ଦାର ମାଳ ।
ଆନନ୍ଦରେ ଆମେ ପୂଜିବା ତାଙ୍କୁ
ସାହା ହୋଇଥିବେ କାଳକାଳକୁ ।
ମନ୍ଦ କାମ ଆମେ କରିବା ନାହିଁ
ଆନନ୍ଦରେ ଦିନ ଦେବା ବିତାଇ ।



ନ୍ଧ= ନ+ଧ

| | | | | | |
|---|---|---|---|---|---|
| ଅନ୍ଧ | ବନ୍ଧ | କାନ୍ଧି | ବନ୍ଧୁକ | ଅନ୍ଧୁଣୀ | ରନ୍ଧନ |
| ବନ୍ଧା | ଅନ୍ଧା | ରନ୍ଧ୍ର | ଗନ୍ଧକ | ଅନ୍ଧାର | ରନ୍ଧନ |

(କ) ଅନ୍ଧ ଦେଶକୁ ଗଲି ଦର୍ପଣ ବିକି
କନ୍ଧ ହାତରେ ଦେଲି ଗୋଦାନ ଟେକି ।

(ଖ) ଚକାଚକା ଭଉଁରୀ ମାମୁ ଘର ଚଉଁରୀ
କାନ୍ଧିକି କାନ୍ଧି କଦଳୀ କାନ୍ଧି ତଳକୁ ପଡ଼େ ଓହଳି ।

(ଗ) ଯେତେ ତାରା ରହିଥାନ୍ତୁ ଆକାଶେ
ଏକା ଚନ୍ଦ୍ର ସିନା ଅନ୍ଧାର ନାଶେ ।



ମ୍ପ= ମ+ପ

| | | | | | |
|---|---|---|---|---|---|
| ପମ୍ପ | ଝାମ୍ପ | କମ୍ପ | ଚମ୍ପୂ | ଝୁମ୍ପୁଡ଼ି | ସମ୍ପନ୍ନ |
| ଚମ୍ପା | ଫମ୍ପା | ତମ୍ପ | ଫିମ୍ପି | ପିମ୍ପୁଡ଼ି | କମ୍ପନ |

(କ) କମ୍ପାନୀରେ ଏବେ ପୁଙ୍ଗା କମ୍ପିଲା
ଚାଲ ଚାଲ ଭାଇ ବେଳ ହୋଇଲା ।

(ଖ) ଫମ୍ପା ମାଠିଆର ଶବଦ ବେଶୀ
ତମ୍ପ ଚୋଟ ଦିଏ ଜୀବନ ନାଶି ।



ମ୍ପ = ମ + ପ

ଗୁମ୍ଫା ଡେମ୍ପ ଡାମ୍ପଣ ଲମ୍ପ ବାମ୍ଫୀ

ସିଂହ ଗୁମ୍ଫାରେ ରହେ । ବାମ୍ପର ବଳ ବହୁତ ।

ବାମ୍ଫୀରୁ ପାଣି ନିଅ । ଫୁଟାଇ ଛାଣି ପିଅ ।

ମ୍ବ = ମ + ବ

ଆମ୍ବ ନିମ୍ବ ଡିମ୍ବ କଦମ୍ବ କମ୍ବଳ ତାମ୍ବୁଲ ଅମ୍ବୁଜ

ନିମ୍ବ ଲାଗଇ ପିତା ପିତା । ଆମ୍ବର ସ୍ୱାଦ ଭାରି ମିଠା ।

ମନେ ରଖିଥାଅ ଅମ୍ବୁଜ ଭାଇ । ଚଇତରେ ନିମ୍ବ ଚକୁଳି ଖାଇ ।

ମ୍ଭ = ମ + ଭ

କୁମ୍ଭ ରମ୍ଭା ଶମ୍ଭୁ ଦମ୍ଭ ଆମ୍ଭର କୁମ୍ଭୀର ଗମ୍ଭୀର

ଦିନେ କୁମ୍ଭୀର ମିତ ବିଲୁଆକୁ ପିଠିରେ ବସାଇ ନେଉଥିଲା । ଠିକ୍ ମଝି ଗଣ୍ଡରେ କହିଲା, ଆଜି ମୁଁ ତୁମ କଲିଜା ଖାଇବି । ବିଲୁଆ କୁମ୍ଭୀରର ଚାଲାକି ବୁଝିଗଲା । ସେ ମୁହଁ ଶୁଖାଇ କହିଲା—ଆରମ୍ଭରୁ ସିନା କହିଥାନ୍ତ । ହଉ ଏବେ କୂଳକୁ ଫେରିଚାଲ । ଗଛ କୋରଡ଼ରୁ କଲିଜା ଆଣି ତୁମକୁ ଦେଇଦେବି । କୁମ୍ଭୀର ଯେମିତି କୂଳକୁ ଆସିଛି ବିଲୁଆ ଫକ୍ କରି ଡେଇଁ ଭୂଇଁରେ ପଡ଼ିଲା । କହିଲା, ଆରେ ବୋକା, କଲିଜା ସବୁ ଗଛ କୋରଡ଼ରେ ନଥାଏ । ଥାଏ ଛାତି ଭିତରେ । ଯା-ଯା, ପାଜି କୋଉଠିକାର ।

କ + କ = କ୍କ ----- ଚିକ୍କଣ, ଧିକ୍କାର, କୁକ୍କୁଟ

କ + ତ = କ୍ତ ----- ଶକ୍ତ, ଶକ୍ତି, ମୁକ୍ତା, ବିଭକ୍ତ

କ + ଷ = କ୍ଷ ----- ପକ୍ଷ, ବୃକ୍ଷ, ଯକ୍ଷ, ପ୍ରତୀକ୍ଷା

କ+ଷ=କ୍ଷ ----- ନକ୍ସା, ରିକ୍ସା, ବାକ୍ସ

ଗ+ଦ=ଗ୍ଦ ----- ବାଗ୍ଦେବୀ, ବାଗ୍ଦାଦ, ବାଗ୍ଦାନ

ଗ+ଧ=ଗ୍ଧ ----- ଦୁଗ୍ଧ, ସ୍ନିଗ୍ଧ, ମୁଗ୍ଧ, ସନ୍ଦିଗ୍ଧ

ଘିଅ ଭାରି ଚିକ୍କଣ ଅଟେ । ସବୁ ମଣିଷଙ୍କ ରକ୍ତ ଏକାପରି ଲାଲ । ମାସକ ଦୁଇପକ୍ଷ । ରିକ୍ସାରେ ତିନୋଟି ଚକ ଅଛି । ସରସ୍ୱତୀଙ୍କୁ ବାଗ୍ଦେବୀ କହନ୍ତି । ସେ ବିଦ୍ୟାଦାନ କରନ୍ତି । ଚନ୍ଦ୍ର କିରଣ ବଡ଼ ସ୍ନିଗ୍ଧ । କୋଣାର୍କ ଦେଖି ହେଲୁ ମୁଗ୍ଧ ।

ଚ+ଚ=ଚ୍ଚ ----- ଚର୍ଚ୍ଚା, ଫର୍ଚ୍ଚା, ଉଚ୍ଚ, ସଚ୍ଚା, ଉଚ୍ଚତା

ଚ+ଛ=ଚ୍ଛ ----- ଇଚ୍ଛା, ପୁଚ୍ଛ, ଗୁଚ୍ଛ, ବିଚ୍ଛେଦ

ଚ+ଞ=ଚ୍ଞ ----- ଯାଚଞ୍ଚା

ଜ+ଜ=ଜ୍ଜ ----- କଜ୍ଜଳ, ଲଜ୍ଜା, ସଜ୍ଜନ

ଉଚ୍ଚ ହେବା ପାଇଁ କର ଯେବେ ଆଶା

ଉଚ୍ଚ କର ଆଗେ ନିଜ ମାତୃଭାଷା ।

ଈଶ୍ୱରଙ୍କ ଇଚ୍ଛାରେ ସଂସାରର ସବୁ କାମ ହୁଏ ।

ସଜ୍ଜନ ସଙ୍ଗେ ହେଲେ ମେଳ । ସୁଖେ କଟିବ ଦିନକାଳ ।

ଜ+ଝ=ଜ୍ଝ ----- କୁଜ୍ଝଟି, କୁଜ୍ଝଟିକା

ଜ+ଞ=ଜ୍ଞ ----- ଆଜ୍ଞା, ଯଜ୍ଞ, ପ୍ରତିଜ୍ଞା, ବିଜ୍ଞାନ

ଟ+ଟ=ଟ୍ଟ ----- ପଟ୍ଟ, ପଟ୍ଟନାୟକ, ଅଟ୍ଟହାସ, ଅଟ୍ଟାଳିକା

ଡ+ଗ=ଡ୍ଗ ----- ଖଡ୍ଗ, ଖଡ୍ଗୀ, ଖଡ୍ଗହସ୍ତ

ଡ+ଡ= ଡ୍ଡ ----- ଉଡ୍ଡୀନ, ଉଡ୍ଡୟନ, ଉଡ୍ଡୀୟମାନ

ଯାହାର ଆଜ୍ଞାରେ ପର୍ବତ । ଜଳେ ଭାସଇ ସୋଲମତ ।

ଖଡ୍ଗ ଧରି ବୀର ଛାଡ଼ି ହୁଙ୍କାର । ଶତ୍ରୁ ସେନାପରେ କରେ ପ୍ରହାର ।

ଉଡ୍ଡୀୟମାନ ଏ ଜାତିର କେତ । କରିବା ସମସ୍ତେ ମସ୍ତକ ନତ ।

ପଟ୍ଟନାୟକ ସେ ବିଜୟାନନ୍ଦ । ସମସ୍ତଙ୍କୁ ଦେଉଥିଲା ଆନନ୍ଦ ।

ତ+କ=ତ୍କ ----- ଉତ୍କଳ, ଚିତ୍କାର, ଉତ୍କଣ୍ଠା

ତ+ତ=ତ୍ତ ----- ଉତ୍ତର, ଉତ୍ତାପ, ଉତ୍ତମ

ତ+ଥ=ତ୍ଥ ----- ଅଶ୍ୱତ୍ଥ, ଉତ୍ଥାନ, ଉତ୍ଥାପନ

ତ+ପ=ତ୍ପ ----- ଉତ୍ପନ୍ନ, ବିତ୍ପାତ, ଉତ୍ପଳ

ତ+ସ=ତ୍ସ ----- ବତ୍ସ, ବତ୍ସାସୁର, ଉତ୍ସାହ

ଦ+ଗ=ଦ୍ଗ ----- ମୁଦ୍ଗର, ଉଦ୍ଗୀରଣ

ଦ+ଘ=ଦ୍ଘ ----- ଉଦ୍ଘାଟନ

ଦ+ଦ=ଦ୍ଦ ----- ଉଦ୍ଦେଶ୍ୟ, ଉଦ୍ଦୀପନା

ଦ+ଧ=ଦ୍ଧ ----- ବୁଦ୍ଧି, ଯୁଦ୍ଧ, ବୁଦ୍ଧିମାନ, ଉଦ୍ଧାର

ଦ+ବ=ଦ୍ବ ----- ବୁଦ୍ବୁଦ

ଦ+ଭ=ଦ୍ଭ ----- ଉଦ୍ଭବ, ସଦ୍ଭାବ, ଅଦ୍ଭୁତ

ଦ+ଯ=ଦ୍ୟ ----- ଉଦ୍ୟୋଗ

ଦେବୀ ବୀଣାପାଣି କେଉଁ ପାପଫଳେ

କରୁଣା ତୋହର ଊଣା ଏ ଉତ୍କଳେ ।

ବୁଦ୍ବୁଦ ପରାଏ ଜୀବନ । କ୍ଷଣକେ ହୋଇଯାଏ ଲୀନ ।

କିଛି ବିତ୍ପାତ ନପଡ଼ିଲେ ଭଲ ଶସ୍ୟ ଉତ୍ପନ୍ନ ହୁଏ ।

ଉଦ୍ୟୋଗ ବଳେ ସର୍ବ ସିଦ୍ଧି । ଜାଣିବ ଏହା ମହାବିଧି ।

ମାର୍କୋଣୀ ଜ୍ଞାନ ବୁଦ୍ଧିବଳେ । ରେଡ଼ିଓ ଉଦ୍ଭାବନ କଲେ ।

ପ+ତ=ପ୍ତ ----- ପ୍ରାପ୍ତ, ପ୍ରାପ୍ତି

ପ+ପ=ପ୍ପ ----- ଖପ୍ପା, ପିପ୍ପଳି

ପ+ସ=ପ୍ସ ----- ବୀପ୍ସା, ଅପ୍ସରା

ବ+ଜ=ବ୍ଜ ----- ଅବ୍ଜ, କୁବ୍ଜ

ବ+ଦ=ବ୍ଦ ----- ଅବ୍ଦ, ଶବ୍ଦ

ବ+ଧ=ବ୍ଧ ----- ଲବ୍ଧ, ଆରବ୍ଧ, ପ୍ରାରବ୍ଧ



ସ୍ୱର୍ଗର ଅପ୍ସରା ସୁନ୍ଦରୀ ଭାରି
ତାଙ୍କ ତୁଲେ କେହି ନୁହଁନ୍ତି ସରି ।
ଦେଖ ସରୋବରେ ଫୁଟିଛି ଅବ୍ଜ ।
ବେଢ଼ନ୍ତି ଭ୍ରମରେ କରିଣ ଶବ୍ଦ ।
ଲବ୍ଧ ଜ୍ଞାନ ତୁମ ହେବ ପରୀକ୍ଷା ।
ନକହିଲେ ଗୁରୁ ହୋଇବେ ଖପ୍ପା ।

ଳ+କ=ଳ୍କ ----- ବଳ୍କଳ, ଶୁଳ୍କ

ଲ+କ=ଲ୍କ ----- ଉଲ୍କା

ଲ+ଗ=ଲ୍ଗ ----- ଫଲ୍ଗୁ, ଫାଲ୍ଗୁନୀ

ଳ+ପ=ଳ୍ପ ----- ଗଳ୍ପ, ତଳ୍ପ, କଳ୍ପନା

ଳ+ଫ=ଳ୍ଫ ----- ଗୁଳ୍ଫ

ଳ+ଭ=ଳ୍ଭ ----- ପ୍ରଗଳ୍ଭ

ଶ+ଚ=ଶ୍ଚ ----- ପଶ୍ଚିମ, ନିଶ୍ଚୟ

ଶ+ଛ=ଶ୍ଛ ----- ଶିରଶ୍ଛେଦ

ଷ+କ=ଷ୍କ ----- ଶୁଷ୍କ, ଦୁଷ୍କର, ପରିଷ୍କାର

ଷ+ଟ=ଷ୍ଟ ----- ଅଷ୍ଟମୀ, ସମଷ୍ଟି

ଷ+ଠ=ଷ୍ଠ ----- ଷଷ୍ଠ, କନିଷ୍ଠ, ନିଷ୍ଠୁର

ଷ+ଣ=ଷ୍ଣ ----- ଉଷ୍ଣ, କୃଷ୍ଣ, ସହିଷ୍ଣୁ

ଷ+ପ=ଷ୍ପ ----- ପୁଷ୍ପ, ନିଷ୍ପାପ

ଷ+ଫ=ଷ୍ଫ ----- ନିଷ୍ଫଳ

ସ+କ=ସ୍କ ----- ତସ୍କର, ଭାସ୍କର, ନମସ୍କାର

ସ+ଖ=ସ୍ଖ ----- ସ୍ଖଳିତ, ସ୍ଖଳନ

ସନ୍ୟାସୀମାନେ ବଲ୍କଳ ପିନ୍ଧନ୍ତି । ଫାଲ୍ଗୁନ ମାସରେ ଦୋଳ ପର୍ବ ପଡ଼େ । ଉଦ୍ୟମ କଲେ ଲୋକ ନିଶ୍ଚୟ କୃତକାର୍ଯ୍ୟ ହେବ । କୃଷ୍ଣ କଂସକୁ ହତ୍ୟା କରିଥିଲେ । ପ୍ରତିଦିନ ସୂର୍ଯ୍ୟଙ୍କୁ ନମସ୍କାର କର । ଚାରିଆଡ଼ ପରିଷ୍କାର ରଖ । ବିଭିନ୍ନ ରଙ୍ଗର ପୁଷ୍ପ ଦେଖିବାକୁ ମିଳେ । ଗ୍ରୀଷ୍ମ ଋତୁରେ ନଈ ପୋଖରୀରୁ ଜଳ ଶୁଷ୍କ ହୋଇଯାଏ । ତାଙ୍କର ସମସ୍ତ ଚେଷ୍ଟା ନିଷ୍ଫଳ ହୋଇଗଲା । ବାଷ୍ପ ବଳରେ ରେଳଗାଡ଼ି ଚାଲେ । ଭଲ ଗଳ୍ପ ବହି ପଢ଼ । ଫଲ୍ଗୁ ନଦୀର ପାଣି ବାଲି ତଳେ ଥାଏ ।

ସ+ତ=ସ୍ତ ----- ଅସ୍ତ, ଅଗସ୍ତି, ବିସ୍ତାରିତ

ସ+ଥ=ସ୍ଥ ----- ସୁସ୍ଥ, ଅବସ୍ଥା, ସ୍ଥାପନ

ସ+ପ=ସ୍ପ ----- ସ୍ପର୍ଶ, ସ୍ପୃହା, ପରସ୍ପର

ସ+ଫ=ସ୍ଫ ----- ସ୍ଫୀତ, ସ୍ଫଟିକ, ଆସ୍ଫାଳନ

କ+ତ+ର=କ୍ତ୍ର ----- ବକ୍ତ୍ର, (ବକ୍ତ୍ର)

କ+ଷ+ଣ=କ୍ଷ୍ଣ ----- ତୀକ୍ଷ୍ଣ

କ+ଷ+ମ=କ୍ଷ୍ମ ----- ଲକ୍ଷ୍ମୀ, ଯକ୍ଷ୍ମା, ସୂକ୍ଷ୍ମ

କ+ଷ+ୟ=କ୍ଷ୍ୟ ----- ସାକ୍ଷ୍ୟ, ଲକ୍ଷ୍ୟ, ଭକ୍ଷ୍ୟ

ଙ+କ+ତ=ଙ୍କ୍ତ ----- ପଙ୍କ୍ତି

ଙ+କ+ଷ=ଙ୍କ୍ଷ ----- ଆକାଙ୍କ୍ଷା, ଶୁଭାକାଙ୍କ୍ଷୀ

ଜ+ଜ+ବ=ଜ୍ଜ୍ୱ----- ଉଜ୍ଜ୍ୱଳ

ଣ+ଡ+ର=ଣ୍ଡ୍ର ----- ପୁଣ୍ଡ୍ର

ତ+ତ+ବ=ତ୍ତ୍ୱ ----- ତତ୍ତ୍ୱ, ମହତ୍ତ୍ୱ, ସତ୍ତ୍ୱର

ତ+ତ+ର=ତ୍ତ୍ର ----- ପୁତ୍ତ୍ର

ତ+ମ+ୟ=ତ୍ମ୍ୟ ----- ମହାତ୍ମ୍ୟ, ଦୌରାତ୍ମ୍ୟ

ତ+ସ+ନ=ତ୍ସ୍ନ ----- ଜ୍ୟୋତ୍ସ୍ନା

ମୁଣ୍ଡକୁ ବକ୍ତ୍ର କହନ୍ତି । ମହାଦେବ ପଞ୍ଚବକ୍ତ୍ର । ଲକ୍ଷ୍ମୀ ସମୁଦ୍ରଙ୍କ କନ୍ୟା । ଲକ୍ଷ୍ମଣ ତୀକ୍ଷ୍ଣ ଶର ମାରି ଲକ୍ଷ୍ୟ ଭେଦ କଲେ । ପିତାମାତା ସର୍ବଦା ଆମର ଶୁଭାକାଙ୍କ୍ଷୀ ଅଟନ୍ତି । ଜ୍ୟୋତ୍ସ୍ନା ରାତିରେ ପଦାରେ ବୁଲିବାକୁ ଭଲ ଲାଗେ । ବିଜୁଳିବତିର ଆଲୋକ ଅତି ଉଜ୍ଜ୍ୱଳ ଅଟେ । ମନୁଷ୍ୟ ଜୀବନ ଅତି ଦୁର୍ଲ୍ଲଭ ।

ତ+ସ+ୟ=ତ୍ସ୍ୟ ----- ମତ୍ସ୍ୟ



ନ+ତ+ୟ=ନ୍ତ୍ୟ ----- ଅନ୍ତ୍ୟ

ନ+ତ+ର=ନ୍ତ୍ର ----- ଯନ୍ତ୍ର, ମନ୍ତ୍ରୀ

ନ+ତ+ବ=ନ୍ତ୍ୱ ----- ସାନ୍ତ୍ୱନା

ନ+ଦ+ର=ନ୍ଦ୍ର ----- ଚନ୍ଦ୍ର, ମନ୍ଦ୍ର, ଉପେନ୍ଦ୍ର

ନ+ଦ+ବ=ନ୍ଦ୍ୱ ----- ଦ୍ୱନ୍ଦ୍ୱ, ପ୍ରତିଦ୍ୱନ୍ଦ୍ୱୀ

ନ+ଧ+ର=ନ୍ଧ୍ର ----- ରନ୍ଧ୍ର, ଆନ୍ଧ୍ର

ନ+ଧ+ଯ=ନ୍ଧ୍ୟ ----- ବିନ୍ଧ୍ୟ, ସନ୍ଧ୍ୟା

ନ+ନ+ଯ=ନ୍ନ୍ୟ ----- ସନ୍ନ୍ୟାସୀ, ସନ୍ନ୍ୟାସିନୀ

ମ+ପ+ର=ମ୍ପ୍ର ----- ସମ୍ପ୍ରତି, ସମ୍ପ୍ରଦାନ

ମ+ଭ+ର=ମ୍ଭ୍ର ----- ସମ୍ଭ୍ରାନ୍ତ, ସମ୍ଭ୍ରମ

ର+ଚ+ଚ=ର୍ଚ୍ଚ ----- ଚର୍ଚ୍ଚା, ଅର୍ଚ୍ଚନା

ର+ଚ+ଛ=ର୍ଚ୍ଛ ----- ମୂର୍ଚ୍ଛା, ମୂର୍ଚ୍ଛିତ

ର+ଣ+ଣ=ର୍ଣ୍ଣ ----- କର୍ଣ୍ଣ, ବର୍ଣ୍ଣ, ସୁବର୍ଣ୍ଣ

ର+ତ+ତ=ର୍ତ୍ତ ----- ଆର୍ତ୍ତ, କୀର୍ତ୍ତନ, କୀର୍ତ୍ତି

ର+ଦ+ଦ=ର୍ଦ୍ଦ ----- ଗର୍ଦ୍ଦଭ

ର+ଦ+ଧ=ର୍ଦ୍ଧ ----- ଅର୍ଦ୍ଧ, ଅର୍ଦ୍ଧାଙ୍ଗିନୀ

ର+ତ+ସ=ର୍ତ୍ସ ----- ଭର୍ତ୍ସନା

ର+ଦ+ର=ର୍ଦ୍ର ----- ଆର୍ଦ୍ର

ର+ଯ+ଯ=ର୍ଯ୍ୟ ----- ଆର୍ଯ୍ୟ, କାର୍ଯ୍ୟ, ସୂର୍ଯ୍ୟ

ମତ୍ସ୍ୟ ଜଳ ବିନା ରହିପାରେ ନାହିଁ । ଭକ୍ତମାନେ ନାନା ବର୍ଣ୍ଣର ପୁଷ୍ପ ଆଣି ଦେବତାଙ୍କୁ ଅର୍ଚ୍ଚନା କରନ୍ତି । କର୍ଣ୍ଣଙ୍କୁ ରାଧା ଓ ଅଧିରଥ ପାଳିଥିଲେ । ଗର୍ଦ୍ଦଭ ପିଠିରେ ବହୁ ଜିନିଷ ବୋହିନିଏ । ସୀତାଦେବୀ ରାମଚନ୍ଦ୍ରଙ୍କର ଅର୍ଦ୍ଧାଙ୍ଗିନୀ ଅଟନ୍ତି । ଆର୍ଦ୍ରବସନ ପିନ୍ଧ ନାହିଁ । କାହାରିକୁ ଭର୍ତ୍ସନା କର ନାହିଁ । କଷ୍ଟ ପାଉଥିବା ଲୋକଙ୍କୁ ସାନ୍ତ୍ୱନା ଦିଅ ।

ର+ଶ+ବ=ର୍ଶ୍ୱ ----- ପାର୍ଶ୍ୱ, ପାର୍ଶ୍ୱିକ

ଷ+କ+ର=ଷ୍କ୍ର ----- ନିଷ୍କ୍ରିୟ, ନିଷ୍କ୍ରାନ୍ତ

ଷ+ଟ+ର=ଷ୍ଟ୍ର ----- ରାଷ୍ଟ୍ର, ଉଷ୍ଟ୍ର

ଷ+ପ+ର=ଷ୍ପ୍ର ------ ଦୁଷ୍ପ୍ରାପ୍ୟ, ନିଷ୍ପ୍ରୟୋଜନ

ସ+ତ+ର=ସ୍ତ୍ର ----- ଅସ୍ତ୍ରାଗାର, ବସ୍ତ୍ରାଳୟ

ସ+ଥ+ୟ=ସ୍ଥ୍ୟ ----- ସ୍ୱାସ୍ଥ୍ୟ, ଗାର୍ହସ୍ଥ୍ୟ

ନ+ତ+ର+ୟ=ନ୍ତ୍ର୍ୟ ----- ସ୍ୱାତନ୍ତ୍ର୍ୟ

ର+ତ+ତ+ୟ=ର୍ତ୍ତ୍ୟ ----- ମର୍ତ୍ତ୍ୟ

ର+ତ+ତ+ର=ର୍ତ୍ତ୍ର ------ କର୍ତ୍ତ୍ରୀ

ର+ଧ+ଧ+ବ=ର୍ଦ୍ଧ୍ୱ ----- ଊର୍ଦ୍ଧ୍ୱରେତା ।

ଆମ ରାଷ୍ଟ୍ରର ନାମ ଭାରତ । ଅସ୍ତ୍ରାଗାରରେ ବହୁତ ଅସ୍ତ୍ରଶସ୍ତ୍ର ରଖାଯାଇଛି । ବହୁ ପୁରୁଣା ପୁସ୍ତକ ବର୍ତ୍ତମାନ ଦୁଷ୍ପ୍ରାପ୍ୟ ହୋଇଗଲାଣି । ଆର୍ଯ୍ୟମାନେ ପ୍ରଧାନ ଧର୍ମଗ୍ରନ୍ଥ ବେଦ ରଚନା କରିଥିଲେ । ନିଷ୍କ୍ରିୟ ହୋଇ ବସିଥିବା ଲୋକଙ୍କୁ ଅଳସୁଆ କୁହାଯାଏ । ପୃଥିବୀ ସୂର୍ଯ୍ୟର ଚତୁର୍ଦ୍ଦିଗରେ ବର୍ଷକେ ଥରେ ବୁଲେ ।

ମର୍ତ୍ତ୍ୟ ମଣ୍ଡଳେ ଦେହ ବହି,

ଦେବତା ହୋଇଲେ ମରଇ ।



# ପ୍ରାର୍ଥନା



ବିଶ୍ୱ ଜୀବନ କରୁଣା ସାଗର
ତୁମ ହାତ ଗଢ଼ା ଏଇ ସଂସାର ।
ତୁମ ଆଜ୍ଞାରେ ବହଇ ପବନ
ତୁମ ଇଙ୍ଗିତେ ଉଅଁଇ ତପନ ।
ତୁମେ ସରବ ଶୋଭାର କରତା
ନଭେ ଶୋଭନ୍ତି ଚନ୍ଦ୍ରମା ତାରକା ।
ଜଳେ କୁମୁଦ କମଳ ହସଇ
ସୁମଧୁର ସ୍ୱରେ ପିକ ରାବଇ ।
ଅନ୍ଧ ବିକଳାଙ୍ଗ ଦୀନ ଦୁଃଖୀର
ସେବା ପାଇଁ ସଦା ହେବି ତତ୍ପର ।
ଏଇ ବୁଦ୍ଧି ଦିଅ ମୋତେ ଠାକୁର
ପର ଦୁଃଖରେ କାନ୍ଦୁ ମୋ ଅନ୍ତର ।
ଆଲ୍ଲା, ଯୀଶୁ, କୃଷ୍ଣ ନାମ ତୁମର
ଘେନ ଚରଣେ ପ୍ରଣତି ମୋହର ।



## ସାତବାର ଓ ବାରମାସ

ରବି ପରେ ସୋମ ତାପରେ ମଙ୍ଗଳ ତାହାପରେ ବୁଧବାର
ଗୁରୁ, ଶୁକ୍ର, ଶନି ଆସେ ପରେ ପରେ ସାତବାର ଏ ପ୍ରକାର ।

ପନ୍ଦର ଦିନରେ ଏକ ପକ୍ଷ ବୋଲି ଦୁଇ ପକ୍ଷେ ଏକ ମାସ
ଦୁଇ ମାସ ମିଳି ଏକ ଋତୁ ହୁଏ ମନେରଖ ପୀତବାସ ।
ଶୁକ୍ଳ ପକ୍ଷେ ଚନ୍ଦ୍ର ପ୍ରତି ଦିବସରେ ବଢ଼ଇ ପୂର୍ଣ୍ଣିମା ଯାଏ
କୃଷ୍ଣ ପକ୍ଷେ ପୁଣି ଅମାବାସ୍ୟା ଯାଏ ଅଳ୍ପେ ଅଳ୍ପେ ଛିଡୁଥାଏ ।

## ଇଂରାଜୀ ମାସ

ତିରିଶ ଦିନରେ ମାସ ହୁଏ ସେପ୍ଟେମ୍ବର
ଆହୁରି ଏପ୍ରିଲ, ଜୁନ୍, ନଭେମ୍ବର ।
ଫେବୃୟାରୀ ମାସ ହୁଏ ଦିନ ଅଠାଇଶ
ଆଉ ସବୁ ମାସମାନ ହୁଏ ଏକତ୍ରିଶ ।
ପ୍ରତି ଚାରିବରଷରେ ପଡ଼େ ଅଧିବର୍ଷ
ସେ ବରଷ ଫେବୃଆରୀ ହୁଏ ଅଣତ୍ରିଶ ।

ଦିନରାତି ମିଶି ଗୋଟିଏ ଦିନ । ସାତ ଦିନରେ ଏକ ସପ୍ତାହ । ବାର ମାସରେ ଏକ ବର୍ଷ । ବର୍ଷକରେ ଛଅଟି ଋତୁ । ପ୍ରତି ଦୁଇ ମାସରେ ଏକ ଋତୁ ଆସେ । ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ,ଶୀତ ବସନ୍ତ ଆଦି ଛଅ ଋତୁ ।

## ବାରମାସ

ବଇଶାଖ ମାସେ ଟାଇଁ ଟାଇଁ ଖରା, ଜ୍ୟେଷ୍ଠ ମାସେ ଗୁଳୁଗୁଳି
ଆଷାଢ଼େ ଆସଇ ନୂଆ ମେଘ ଘୋଟି ଶ୍ରାବଣେ ବରଷା ଝଡ଼ି ।
ଭାଦ୍ରବ ମାସରେ ଭରିଯାଏ ଭୂଇଁ ନୂଆଫୁଲ ନୂଆ ଫଳେ ।
ଅଶିଣେ ନିର୍ମଳ ନେଳିଆ ଆକାଶ କୋଟି ତାରା ଦୀପ ଜଳେ ।

କାର୍ତ୍ତିକେ କାକର ଦିଶଇ ସୁନ୍ଦର ନୀଳଦୂବ ଘାସେ ଝରି
ମଗୁଶୀର ମାସ ପାହାନ୍ତିଆ ଶୀତେ ଦେହ ଉଠୁଥାଏ ଥରି ।
ପଉଷ ମାସରେ କୁହୁଡ଼ି ଘୋଟଇ ଗାଆଁ ଗଣ୍ଡା ଧାନ ବିଲେ
ମାଘ ମାସେ ଶୀତ ବାଘ ପରି ଆସେ ସଭିଏଁ ପଶନ୍ତି ଘରେ ।
ଫଗୁଣ ମାସରେ ଆମ୍ବ ବଉଳଇ ଗାଆଁ ଭୂଇଁ ଉଠେ ବାସି
ଚଇତେ ସୁନ୍ଦର ଦକ୍ଷିଣା ପବନ ମନ କରିଦିଏ ଖୁସି ।

## ଗାନ୍ଧିଜୀଙ୍କ ତିନିମାଙ୍କଡ଼

ମହାତ୍ମା ଗାନ୍ଧି ଆମ ଭାରତକୁ ସ୍ୱାଧୀନ କଲେ । ଭାରତମାତା ମୁକ୍ତ ହୋଇ ଶାନ୍ତିର ନିଃଶ୍ୱାସ ମାରିଲା । ଲୋକଙ୍କୁ ଶିକ୍ଷା ଦେବା ଉଦ୍ଦେଶ୍ୟରେ ଗାନ୍ଧିଜୀ ତିନୋଟି ମାଙ୍କଡ଼ ମୂର୍ତ୍ତି ରଖିଥିଲେ ।

ପ୍ରଥମ ମାଙ୍କଡ଼ଟି ଦି ହାତରେ ଆଖି ବନ୍ଦ କରି ବସିଛି । ସେ ଜଣାଇ ଦେଉଛି ଖରାପ କଥା ଦେଖ ନାହିଁ । ଦ୍ୱିତୀୟଟି ଦି ହାତରେ କାନ ବନ୍ଦ କରି ବସିଛି । ସେ ଜଣାଉଛି କେହି ଖରାପ କଥା ଶୁଣ ନାହିଁ । ତୃତୀୟଟି ପାଟି ବନ୍ଦ କରି ବସିଛି । ତା ଅର୍ଥ କେହି ଖରାପ କଥା କହ ନାହିଁ ।



## ସଞ୍ଜହେଲେ

ମାଆ କୋଳକୁ ଯାଆନ୍ତି ରବି ଦିନ ହୋଇଲା ଶେଷ
ରଜନୀ ରାଣୀ ଆସଇ ଧୀରେ ଧରିଣ କଳା ବେଶ ।
ସଞ୍ଜ ହେଲେ ଘରଣୀମାନେ ପ୍ରଦୀପ ହାତେ ଧରି
ଚଉରା ମୂଳେ ଯତନେ ଥାପି ଦିଅନ୍ତି ହୁଳହୁଳି ।
ସଞ୍ଜ ହେଲେ ଫେରନ୍ତି ନୀଡ଼େ ପକ୍ଷିଏ ଦଳଦଳ
ଗାଈ ଆଳଟି ଆଣଇ ଘରେ ଅଡ଼ାଇ ଗୋରୁପଲ ।
ସଞ୍ଜ ହେଲେ ଗାଆଁ ମନ୍ଦିରେ ହୁଏ ଆରତି ବେଳ
ଘଣ୍ଟ ବାଜେ ଘଣ୍ଟା ବାଜେ ଶୁଭଇ ହରିବୋଲ ।

## ବୋଉ ସେ ମୋର ବୋଉ

ବୋଉ ସେ ମୋର ବୋଉ
ସାରା ସଂସାରେ ତାପରି ଜଣେ ନାହି ତ କାହିଁ ଆଉ ।
କୋଳଟି ତାର ସରଗ ମୋର
ଲାଗଇ ଆହା କେଡ଼େ କଅଁଳ
ନିଘୋଡ଼ ନିଦ ଆସଇ ଘୋଟି ଟିକିଏ ଶୋଉ ଶୋଉ ।
ଖାଇ ନଥିଲେ ଖୁଆଏ ଡାକି
ଡରିଲେ ଧରେ ଛାତିରେ ଜାକି
କାନ୍ଦିଲେ ଲୁହ ପଣନ୍ତେ ପୋଛି କହେ ମୋ ଧନ ଆଉ ।
ରୋଗରେ ମୁହିଁ ପଡ଼ିଲେ କେବେ
ସଂସାର ତାର ସରିଲା ତେବେ ।
ଦଣ୍ଡେ ମୋ ପାଖ ଛାଡ଼େନି ସେ ତ ଦୁନିଆଁ ଭାସିଯାଉ
ବୋଉ ସେ ମୋର ବୋଉ ।

# ରଙ୍ଗ

ଧଳା ତ ଧଳା ବଗୁଲୀ ଧଳା
ଧଳା ପୂନେଇ ଚାନ୍ଦ ।
ଟଙ୍କା ଅଧୁଲି ସୁଉକି ଧଳା
ଧଳା ଟଗର କୁନ୍ଦ ।
ନାଲିତ ନାଲି ଅଳତା ନାଲି
ନାଲି ସିନ୍ଦୂର ଟୋପା
ସାଧବ ବୋହୂ ଆହୁରି ନାଲି
ନାଲି ମନ୍ଦାର ଥୋପା ।
କଳାତ କଳା କାଉଟା କଳା
କାଳିଆ ମୁହଁ ହନୁ
ଜଗନ୍ନାଥଙ୍କ କଳା ବଦନ
ଭୁଲି ନହୁଏ ମନୁ ।
ନେଳିତ ନେଳି ଆକାଶ ନେଳି
ନେଳି ଦରିଆ ଜଳ
ହଳଦି ରଙ୍ଗ ଦିଶଇ ସୁନା
ହଳଦି କନିଅର ।



୧ ଏକ
୨ ଦୁଇ
୩ ତିନି
} ବାବାଜି ବଜାଏ ଗିନି

୧୦ ଦଶ
୧୧ ଏଗାର
୧୨ ବାର
} କାହାକୁ ନକର ପର

୪ ଚାରି
୫ ପାଞ୍ଚ
୬ ଛଅ
} ଅଳପଟିକିଏ ରହ

୧୩ ତେର
୧୪ ଚଉଦ
୧୫ ପନ୍ଦର
} ଗାନ୍ଧିଜୀଙ୍କ ତିନି ବାନ୍ଦର

୭ ସାତ
୮ ଆଠ
୯ ନଅ
} ଅସୁରୁଣୀ ଗପ କହ

୧୬ ଷୋହଳ
୧୭ ସତର
୧୮ ଅଠର
} ପକା ଆଣି ଖଲିପତର

୧୯ ଊଣାଇଶ
ଆଉ ୨୦ କୋଡ଼ିଏ
} ଘରେ ପିଲା ହେବେ ଯୋଡ଼ିଏ



| | | |
|---|---|---|
| ଏକ | ........................................................ | ୧ |
| ଦଶ | ........................................................ | ୧୦ |
| ଶହ | ........................................................ | ୧୦୦ |
| ହଜାର | ........................................................ | ୧୦୦୦ |
| ଅୟୁତ | ........................................................ | ୧୦୦୦୦ |
| ଲକ୍ଷ | ........................................................ | ୧୦୦୦୦୦ |
| ନିୟୁତ | ........................................................ | ୧୦୦୦୦୦୦ |
| କୋଟି | ........................................................ | ୧୦୦୦୦୦୦୦ |
| ଅର୍ବୁଦ | ........................................................ | ୧୦୦୦୦୦୦୦୦ |

ଇଂରାଜୀ ସଂଖ୍ୟା: 1, 2, 3, 4, 5, 6, 7, 8, 9, 10,
20, 30, 40, 50 60, 70, 80, 90, 100,

**ଜମିମାପ**- ଏକରକ ୧୦୦ ଡେସିମିଲ–ସ୍ଥାନେ ସ୍ଥାନେ ଏକରକ ୧୦୦୦ ଡେସିମିଲ ମଧ୍ୟ ହୁଏ । ଜରିବକ ୧୦୦ କଡ଼ି । ଲମ୍ବ ଜରିବେ ଓସାର ଜରିବେ ହେଲେ ଜମି ହୁଏ ୧୦ ଡିସିମଲ୍ ବା ଅଢ଼େଇଗୁଣ୍ଠ ।



# ପଣକିଆ

| | | | | | | | | | |
|---|---|---|---|---|---|---|---|---|---|
| ୨ | ୪ | ୬ | ୮ | ୧୦ | ୧୨ | ୧୪ | ୧୬ | ୧୮ | ୨୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୨ | ୨ | ୨ | ୨ | ୨ | ୨ | ୨ | ୨ | ୨ | ୨ |

| | | | | | | | | | |
|---|---|---|---|---|---|---|---|---|---|
| ୩ | ୬ | ୯ | ୧୨ | ୧୫ | ୧୮ | ୨୧ | ୨୪ | ୨୭ | ୩୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୩ | ୩ | ୩ | ୩ | ୩ | ୩ | ୩ | ୩ | ୩ | ୩ |

| | | | | | | | | | |
|---|---|---|---|---|---|---|---|---|---|
| ୪ | ୮ | ୧୨ | ୧୬ | ୨୦ | ୨୪ | ୨୮ | ୩୨ | ୩୬ | ୪୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୪ | ୪ | ୪ | ୪ | ୪ | ୪ | ୪ | ୪ | ୪ | ୪ |

| | | | | | | | | | |
|---|---|---|---|---|---|---|---|---|---|
| ୫ | ୧୦ | ୧୫ | ୨୦ | ୨୫ | ୩୦ | ୩୫ | ୪୦ | ୪୫ | ୫୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୫ | ୫ | ୫ | ୫ | ୫ | ୫ | ୫ | ୫ | ୫ | ୫ |

| | | | | | | | | | |
|---|---|---|---|---|---|---|---|---|---|
| ୬ | ୧୨ | ୧୮ | ୨୪ | ୩୦ | ୩୬ | ୪୨ | ୪୮ | ୫୪ | ୬୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୬ | ୬ | ୬ | ୬ | ୬ | ୬ | ୬ | ୬ | ୬ | ୬ |

| | | | | | | | | | |
|---|---|---|---|---|---|---|---|---|---|
| ୭ | ୧୪ | ୨୧ | ୨୮ | ୩୫ | ୪୨ | ୪୯ | ୫୬ | ୬୩ | ୭୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୭ | ୭ | ୭ | ୭ | ୭ | ୭ | ୭ | ୭ | ୭ | ୭ |

| | | | | | | | | | |
|---|---|---|---|---|---|---|---|---|---|
| ୮ | ୧୬ | ୨୪ | ୩୨ | ୪୦ | ୪୮ | ୫୬ | ୬୪ | ୭୨ | ୮୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୮ | ୮ | ୮ | ୮ | ୮ | ୮ | ୮ | ୮ | ୮ | ୮ |

| | | | | | | | | | |
|---|---|---|---|---|---|---|---|---|---|
| ୯ | ୧୮ | ୨୭ | ୩୬ | ୪୫ | ୫୪ | ୬୩ | ୭୨ | ୮୧ | ୯୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୯ | ୯ | ୯ | ୯ | ୯ | ୯ | ୯ | ୯ | ୯ | ୯ |

| | | | | | | | | | |
|---|---|---|---|---|---|---|---|---|---|
| ୧୦ | ୨୦ | ୩୦ | ୪୦ | ୫୦ | ୬୦ | ୭୦ | ୮୦ | ୯୦ | ୧୦୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୧୦ | ୧୦ | ୧୦ | ୧୦ | ୧୦ | ୧୦ | ୧୦ | ୧୦ | ୧୦ | ୧୦ |

| | | | | | | | | | |
|---|---|---|---|---|---|---|---|---|---|
| ୧୧ | ୨୨ | ୩୩ | ୪୪ | ୫୫ | ୬୬ | ୭୭ | ୮୮ | ୯୯ | ୧୧୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୧୧ | ୧୧ | ୧୧ | ୧୧ | ୧୧ | ୧୧ | ୧୧ | ୧୧ | ୧୧ | ୧୧ |

| | | | | | | | | | |
|---|---|---|---|---|---|---|---|---|---|
| ୧୨ | ୨୪ | ୩୬ | ୪୮ | ୬୦ | ୭୨ | ୮୪ | ୯୬ | ୧୦୮ | ୧୨୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୧୨ | ୧୨ | ୧୨ | ୧୨ | ୧୨ | ୧୨ | ୧୨ | ୧୨ | ୧୨ | ୧୨ |

| | | | | | | | | | |
|---|---|---|---|---|---|---|---|---|---|
| ୧୩ | ୨୬ | ୩୯ | ୫୨ | ୬୫ | ୭୮ | ୯୧ | ୧୦୪ | ୧୧୭ | ୧୩୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୧୩ | ୧୩ | ୧୩ | ୧୩ | ୧୩ | ୧୩ | ୧୩ | ୧୩ | ୧୩ | ୧୩ |

| | | | | | | | | | |
|---|---|---|---|---|---|---|---|---|---|
| ୧୪ | ୨୮ | ୪୨ | ୫୬ | ୭୦ | ୮୪ | ୯୮ | ୧୧୨ | ୧୨୬ | ୧୪୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୧୪ | ୧୪ | ୧୪ | ୧୪ | ୧୪ | ୧୪ | ୧୪ | ୧୪ | ୧୪ | ୧୪ |

| | | | | | | | | | |
|---|---|---|---|---|---|---|---|---|---|
| ୧୫ | ୩୦ | ୪୫ | ୬୦ | ୭୫ | ୯୦ | ୧୦୫ | ୧୨୦ | ୧୩୫ | ୧୫୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୧୫ | ୧୫ | ୧୫ | ୧୫ | ୧୫ | ୧୫ | ୧୫ | ୧୫ | ୧୫ | ୧୫ |

| | | | | | | | | | |
|---|---|---|---|---|---|---|---|---|---|
| ୧୬ | ୩୨ | ୪୮ | ୬୪ | ୮୦ | ୯୬ | ୧୧୨ | ୧୨୮ | ୧୪୪ | ୧୬୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୧୬ | ୧୬ | ୧୬ | ୧୬ | ୧୬ | ୧୬ | ୧୬ | ୧୬ | ୧୬ | ୧୬ |

| | | | | | | | | | |
|---|---|---|---|---|---|---|---|---|---|
| ୧୭ | ୩୪ | ୫୧ | ୬୮ | ୮୫ | ୧୦୨ | ୧୧୯ | ୧୩୬ | ୧୫୩ | ୧୭୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୧୭ | ୧୭ | ୧୭ | ୧୭ | ୧୭ | ୧୭ | ୧୭ | ୧୭ | ୧୭ | ୧୭ |

| | | | | | | | | | |
|---|---|---|---|---|---|---|---|---|---|
| ୧୮ | ୩୬ | ୫୪ | ୭୨ | ୯୦ | ୧୦୮ | ୧୨୬ | ୧୪୪ | ୧୬୨ | ୧୮୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୧୮ | ୧୮ | ୧୮ | ୧୮ | ୧୮ | ୧୮ | ୧୮ | ୧୮ | ୧୮ | ୧୮ |

| | | | | | | | | | |
|---|---|---|---|---|---|---|---|---|---|
| ୧୯ | ୩୮ | ୫୭ | ୭୬ | ୯୫ | ୧୧୪ | ୧୩୩ | ୧୫୨ | ୧୭୧ | ୧୯୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୧୯ | ୧୯ | ୧୯ | ୧୯ | ୧୯ | ୧୯ | ୧୯ | ୧୯ | ୧୯ | ୧୯ |

| | | | | | | | | | |
|---|---|---|---|---|---|---|---|---|---|
| ୨୦ | ୪୦ | ୬୦ | ୮୦ | ୧୦୦ | ୧୨୦ | ୧୪୦ | ୧୬୦ | ୧୮୦ | ୨୦୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୨୦ | ୨୦ | ୨୦ | ୨୦ | ୨୦ | ୨୦ | ୨୦ | ୨୦ | ୨୦ | ୨୦ |

| | | | | | | | | | |
|---|---|---|---|---|---|---|---|---|---|
| ୨୧ | ୪୨ | ୬୩ | ୮୪ | ୧୦୫ | ୧୨୬ | ୧୪୭ | ୧୬୮ | ୧୮୯ | ୨୧୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୨୧ | ୨୧ | ୨୧ | ୨୧ | ୨୧ | ୨୧ | ୨୧ | ୨୧ | ୨୧ | ୨୧ |

| | | | | | | | | | |
|---|---|---|---|---|---|---|---|---|---|
| ୨୨ | ୪୪ | ୬୬ | ୮୮ | ୧୧୦ | ୧୩୨ | ୧୫୪ | ୧୭୬ | ୧୯୮ | ୨୨୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୨୨ | ୨୨ | ୨୨ | ୨୨ | ୨୨ | ୨୨ | ୨୨ | ୨୨ | ୨୨ | ୨୨ |

| | | | | | | | | | |
|---|---|---|---|---|---|---|---|---|---|
| ୨୩ | ୪୬ | ୬୯ | ୯୨ | ୧୧୫ | ୧୩୮ | ୧୬୧ | ୧୮୪ | ୨୦୭ | ୨୩୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୨୩ | ୨୩ | ୨୩ | ୨୩ | ୨୩ | ୨୩ | ୨୩ | ୨୩ | ୨୩ | ୨୩ |

| | | | | | | | | | |
|---|---|---|---|---|---|---|---|---|---|
| ୨୪ | ୪୮ | ୭୨ | ୯୬ | ୧୨୦ | ୧୪୪ | ୧୬୮ | ୧୯୨ | ୨୧୬ | ୨୪୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୨୪ | ୨୪ | ୨୪ | ୨୪ | ୨୪ | ୨୪ | ୨୪ | ୨୪ | ୨୪ | ୨୪ |

| | | | | | | | | | |
|---|---|---|---|---|---|---|---|---|---|
| ୨୫ | ୫୦ | ୭୫ | ୧୦୦ | ୧୨୫ | ୧୫୦ | ୧୭୫ | ୨୦୦ | ୨୨୫ | ୨୫୦ |
| ୧ | ୨ | ୩ | ୪ | ୫ | ୬ | ୭ | ୮ | ୯ | ୧୦ |
| ୨୫ | ୨୫ | ୨୫ | ୨୫ | ୨୫ | ୨୫ | ୨୫ | ୨୫ | ୨୫ | ୨୫ |

## ମେଟ୍ରିକ ପ୍ରଣାଳୀ

### ଓଜନ

୧୦ ମିଲିଗ୍ରାମ = ୧ ସେଣ୍ଟିଗ୍ରାମ୍

୧୦ ସେଣ୍ଟିଗ୍ରାମ୍ = ୧ ଡେସିଗ୍ରାମ୍

୧୦ ଡେସିଗ୍ରାମ୍ = ୧ ଗ୍ରାମ୍

୧୦ ଗ୍ରାମ = ୧ ଡେକାଗ୍ରାମ୍

୧୦ ଡେକାଗ୍ରାମ୍ = ୧ ହେକ୍ଟୋଗ୍ରାମ୍



୧୦ ହେକ୍ଟୋଗ୍ରାମ = ୧ କିଲୋଗ୍ରାମ
୧୦ କିଲୋଗ୍ରାମ = ୧ ମିରିଆଗ୍ରାମ୍
୧୦ ମିରିଆଗ୍ରାମ୍ = ୧ କୁଇଣ୍ଟାଲ
୧୦ କୁଇଣ୍ଟାଲ = ୧ ମେଟ୍ରିକ ଟନ୍

## ଦୈର୍ଘ୍ୟ ମାପ

୧୦ ମିଲିମିଟର = ୧ ସେଣ୍ଟିମିଟର
୧୦ ସେଣ୍ଟିମିଟର = ୧ ଡେସିମିଟର
୧୦ ଡେସିମିଟର = ୧ ମିଟର
୧୦ ମିଟର = ୧ ଡେକାମିଟର
୧୦ ଡେକାମିଟର = ୧ କିଲୋମିଟର ହେକ୍ଟୋ
୧୦ କିଲୋମିଟର = ୧ ମିରିଆମିଟର

## ଭୂମି ମାପ

୧୦ କିଲୋମିଟର = ୧ ମିରିଆମିଟର

୧୦୦ ବର୍ଗ ମିଟର = ୧ ଏୟର

## ସମୟ ପରିମାପ

୧ ବର୍ଷ = ୧୨ ମାସ
୧ ମାସ = ୩୦ ଦିନ
୧ ଦିନ = ୨୪ ଘଣ୍ଟା
୧ ଘଣ୍ଟା = ୬୦ ମିନିଟ୍
୧ ମିନିଟ୍ = ୬୦ ସେକେଣ୍ଡ

## ତରଳ ପଦାର୍ଥ ମାପ

୧୦ ମିଲିମିଟର = ୧ ସେଣ୍ଟିଲିଟର
୧୦ ସେଣ୍ଟିଲିଟର = ୧ ଡେସିଲିଟର
୧୦ ଡେସିଲିଟର = ୧ ଲିଟର
୧୦ ଲିଟର = ୧ ଡେକାଲିଟର

୧୦ ଡେକାଲିଟର = ୧ ହେକ୍ଟୋଲିଟର
୧୦ ହେକ୍ଟୋଲିଟର = ୧ କିଲୋଲିଟର
୧୦ କିଲୋଲିଟର = ୧ ମିରିଆଲିଟର

---

| A | B | C | D | E | F | G | H | I | J | K |
|---|---|---|---|---|---|---|---|---|---|---|
| ଏ | ବି | ସି | ଡି | ଇ | ଏଫ୍ | ଜି | ଏଚ୍ | ଆଇ | ଜେ | କେ |
| L | M | N | O | P | Q | R | S | T | U | V |
| ଏଲ | ଏମ୍ | ଏନ୍ | ଓ | ପି | କ୍ୟୁ | ଆର୍ | ଏସ୍ | ଟି | ୟୁ | ଭି |
| | | | W | | X | Y | Z | | | |
| | | | ଡବ୍ଲ୍ୟୁ | | ଏକ୍ସ | ୱାଇ | ଜେଡ | | | |

| a | b | c | d | e | f | g | h | i | j | k |
|---|---|---|---|---|---|---|---|---|---|---|
| l | m | n | o | p | q | r | s | t | u | v |
| | | | w | x | y | z | | | | |

| | | | | | | | | | |
|---|---|---|---|---|---|---|---|---|---|
| 1 | 2 | 3 | 4 | 5 | 6 | 7 | 8 | 9 | 10 |

A - APPLE - ଆପଲ୍ - ସେଓ
B - BAG - ବ୍ୟାଗ୍ - ମୁଣା
C - CAT - କ୍ୟାଟ - ବିଲେଇ
D - DOG - ଡଗ - କୁକୁର
E - ELEPHANT - ଏଲିଫ୍ୟାଣ୍ଟ ହାତୀ
F - FROG - ଫ୍ରଗ୍ - ବେଙ୍ଗ
G - GOAT - ଗୋଟ - ଛେଳି

| | | | |
|---|---|---|---|
| H - | HAT - | ହ୍ୟାଟ - | ଟୋପି |
| I - | INK - | ଇଙ୍କ - | କାଳି |
| J - | JUG - | ଜଗ - | ମଗ |
| K - | KITE - | କାଇଟ୍ - | ଗୁଡ଼ି |
| L - | LOTUS - | ଲୋଟସ୍ - | ପଦ୍ମ |
| M - | MOON - | ମୁନ - | ଚନ୍ଦ୍ର |
| N - | NAME - | ନେମ୍ - | ନାମ |
| O - | ORANGE - | ଅରେଞ୍ଜ - | କମଳା |
| P - | PEGION - | ପିଜନ୍ - | ପାରା |
| Q - | QUEEN - | କୁଇନ୍ - | ରାଣୀ |
| R - | ROSE - | ରୋଜ୍ - | ଗୋଲାପ |
| S - | SISTER - | ସିଷ୍ଟର୍ - | ଭଉଣୀ |
| T - | TEACHER - | ଟିଚର୍ - | ଶିକ୍ଷକ |
| U - | UMBRELLA - | ଅମ୍ବ୍ରେଲା - | ଛତା |
| V - | VAN - | ଭ୍ୟାନ୍ - | ଗାଡ଼ି |
| W - | WATCH - | ୱାଚ୍ - | ଘଡ଼ି |
| X - | X-MAS - | ଏକ୍ସ-ମାସ | ବଡ଼ଦିନ |
| Y - | YAK - | ୟ୍ୟାକ୍ - | ଯୁଆଳି |
| Z - | ZOO - | ଜୁ - | ଚିଡ଼ିଆଖାନା |



(କ) ଟିକି ଚଢ଼େଇ ଟିକକ ପାଣିରେ ବୁଡ଼ି ମରଇ ।
(ଖ) ଏକ କାଳୀ ଗାଈ ଶୋଇଛି
ଶହେ ଷାଠିଏ ବାଛୁରୀ ଲାଗିଛି ।
(ଗ) ଗଛ ନହକା ପତର ବଙ୍କା
ତା'ଫଳର ମୂଲ ଅମାପ ଟଙ୍କା ।
(ଘ) ଯାଇଥିଲି ବନ୍ଧହଣା
ଏକା ଗଛତଳ ଦେଖି ଆସିଲି
କପା, କଦଳୀ, ବଡଚଣା ।
(ଙ) ରାତିରେ ଦେଖିଲି ବଗିଚାଟି ମୋରଫୁଲେ ଥିଲା ଭରପୂର ।
ସକାଳୁ ଉଠି ମୁଁ ମୁଣ୍ଡେ ହାତ ଦେଲି ସବୁ ଫୁଲ ନେଲା
ଚୋର ।
(ଚ) କେତେ ବେଳେ ପିଏ କଳାପାଣି ପୁଣି
କେତେବେଳେ ପିଏ ନାଲି
ପେଟ ଖାଲି ହେଲେ ଥକି ପଡ଼େ ମୁହିଁ
ଆଉ ନପାରଇ ଚାଲି ।
(ଛ) ମୁଣ୍ଡନାହିଁ ତା'ର ଗୋଡ଼ ବି ନାହିଁ
ମଣିଷକୁ ଗୋଟା ଗିଳି ଦେଉଥାଏ ।
ଜାଣିଥିଲେ ନାଆଁ ଦିଅ ବତାଇ ।
(ଜ) ଭୂଇଁ ତଳେ ଥାଏ ଥାଏ ଆକାଶେ
ଉଚ୍ଚ ପରବତ ଶିଖରେ ବସେ ।
ଭୂଇଁ ତଳେ ମୋର ରଙ୍ଗ କିଛି ନାହିଁ
ଆକାଶେ ଦିଶଇ କଳା ।
ପରବତ ଶିଖେ ବସିଥିବା ବେଳେ
ଦିଶେ ମୁହିଁ ଧଳା ଧଳା ।



ଜନଗଣ ମନ ଅଧିନାୟକ ଜୟ ହେ
ଭାରତ ଭାଗ୍ୟ ବିଧାତା,
ପଞ୍ଜାବ, ସିନ୍ଧୁ, ଗୁଜରାଟ, ମରାଠା,
ଦ୍ରାବିଡ଼, ଉତ୍କଳ, ବଙ୍ଗ,
ବିନ୍ଧ୍ୟ, ହିମାଚଳ, ଯମୁନା, ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ,
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ ମଙ୍ଗଳ ଦାୟକ ଜୟହେ
ଭାରତ-ଭାଗ୍ୟ-ବିଧାତା
ଜୟ ହେ, ଜୟ ହେ, ଜୟ ହେ,
ଜୟ ଜୟ ଜୟ
ଜୟ ହେ